# ପଥ୍ୟାପଥ୍ୟ

## ବ୍ୟବସ୍ଥା ।

ଅର୍ଥାତ୍

ସଂସ୍କୃତରୁ ଉତ୍କଳଭାଷାରେ

ଶ୍ରୀ ଫକୀର ତ୍ରିପାଠୀ କବିରାଜଙ୍କ ଦ୍ୱାରା

ଅନୁବାଦିତ ହୋଇ

ପ୍ରଥମବାର ମୁଦ୍ରିତ

ଓ ପ୍ରକାଶିତ ହେଲା ।

---

CUTTACK:

Printed by the Cuttack Printing Company,

1894.

ମୂଲ୍ୟ ୦ ।

# ଭୂମିକା ।

ରୋଗ ନିବାରଣ ନିମିତ୍ତ ଔଷଧି ନିତାନ୍ତ ପ୍ରୟୋଜନୀୟ ହେଲେ ହେଁ ସୁପଥ୍ୟ ଅଭାବରେ ରୋଗର ଉପଶମ ହୁଅଇ ନାହିଁ । ଅନେକ ସ୍ଥାନରେ ଦେଖାଯାଇ ଅଛି ଯେ ଭଲଔଷଧିର ପ୍ରୟୋଗ ହେଉଥିଲେ ହେଁ ଅପଥ୍ୟ ହେତୁ ରୋଗର ଉପଶମ ନ ହୋଇ ରୋଗୀ କାଳକବଳରେ ନିପତିତ ହୁଏ । ଅନେକେ ଔଷଧି ପ୍ରୟୋଗ କରିପାରନ୍ତି ମାତ୍ର ସୁପଥ୍ୟର ବନ୍ଦୋବସ୍ତ କରିବା ଅତ୍ୟନ୍ତ କଠିନ ଏବଂ ସୁପଥ୍ୟ ଅଭାବରେ ରୋଗୀ ବିଶେଷ କଷ୍ଟପ୍ରାପ୍ତ ହୁଏ । ଆମ୍ଭେ ଏହି ଅଭାବ ପରିଦର୍ଶନ କରି ତାହା ମୋଚନ କରିବା ନିମିତ୍ତ ଏହି ପୁସ୍ତିକା ମୁଦ୍ରାଙ୍କନରେ ଯତ୍ନବାନ୍ ହୋଇଅଛୁଁ । ଏହା ଦେଖି ରୋଗୀ ଏବଂ ତାଙ୍କର ବନ୍ଧୁମାନେ ନାନା ରୋଗରେ ଆପେ୨ ପଥ୍ୟାପଥ୍ୟର ନିର୍ଣ୍ଣୟକରି ସୁନିୟମରେ ଚଳିପାରିବେ । ଉତ୍କଳଭାଷାରେ ଏପରି ପୁସ୍ତକ ଏପର୍ଯ୍ୟନ୍ତ ଛାପା ହୋଇ ନାହିଁ ଏବଂ ଉତ୍କଳୀୟମାନେ ଏହା ଦ୍ୱାରା ଉପକାର ପ୍ରାପ୍ତହେବାର ଦେଖିଲେ ଆମ୍ଭେ ଆପଣାର ଶ୍ରମ ସଫଳ ହେବାର ଜ୍ଞାନ କରିବୁଁ ।

ଏଥିରେ ଯେ ରୋଗମାନଙ୍କର କ୍ରମାନ୍ୱୟରେ ଯେଯେ ଦ୍ରବ୍ୟମାନ ପଥ୍ୟାପଥ୍ୟ ବୋଲି ଲେଖା ହୋଇଛି ତହିଁମଧ୍ୟରୁ ବୃକ୍ଷମାନଙ୍କର ଯେଉଁ ଯେଉଁସ୍ଥାନରେ ପ୍ରୟୋଜନ ହେବ ତାହା ସେଠାରେ ଗ୍ରହଣ କରିବାକୁ ହେବ, ଯଥା, ଫଳ, ମୂଳ, ତ୍ୱକ୍ ଅସ୍ଥି ପତ୍ର ସାର ବୀଜ, ଇତ୍ୟାଦି । ଏପରି ଯେଉଁସ୍ଥାନରେ ଜନ୍ତୁ ଲେଖାହୋଇ ଅଛି ସେଠାରେ ବର୍ତ୍ତିମାନଙ୍କର ମାଂସ ଘେନିବାକୁହେବ ଯେଉଁସ୍ଥାନରେ ପକ୍ଷୀ ଏବଂ ଅସ୍ଥ୍ୟାଦି ଲେଖାଥିବ ସେଠାରେ ତାହା ଗ୍ରହଣ କରିବାକୁ ହେବ । ଗୂଢ଼ଶବ୍ଦ ( କାମ୍ବଲୀକ ଇତ୍ୟାଦି) ମାନଙ୍କର ଅର୍ଥ ପୁସ୍ତକର ଶେଷଭାଗରେ ଦିଆଯାଇଅଛି ।

ଶ୍ରୀ ଫକୀର ତ୍ରିପାଠୀ କବିରାଜ ।

# ପଥ୍ୟାପଥ୍ୟ—ବ୍ୟବସ୍ଥା ।

## ଉପକ୍ରମଣିକା ।

ଯେ ମହାତ୍ମା ସତ୍ତ୍ୱ ରଜ ତମୋଗୁଣଙ୍କୁ ଆଶ୍ରୟ କରି ସ୍ୱୟଂ ଜଗତର ସୃଷ୍ଟି ସ୍ଥିତି ଓ ପ୍ରଳୟ କରନ୍ତି ଯେ ଇନ୍ଦ୍ରାଦି ଦେବଗଣଙ୍କର ପୂଜ୍ୟ ସେହି ପରମକାରୁଣିକ ଜଗଦୀଶ୍ୱର ରୋଗଗ୍ରସ୍ତ ମାନବମାନଙ୍କୁ ରକ୍ଷା କରନ୍ତୁ । ଜ୍ଞାନବୃଦ୍ଧ ମହର୍ଷିଗଣ ଏବଂ ଅନ୍ୟାନ୍ୟ ସଂଗ୍ରହକାରୀ ଗ୍ରନ୍ଥକାରଙ୍କ ପ୍ରଣୀତ ଆୟୁର୍ବେଦୀୟ ଗ୍ରନ୍ଥମାନଙ୍କୁ ଆଲୋଚନାକରି ବ୍ୟାଧିପୀଡ଼ିତ ଲୋକ-ମାନଙ୍କର ଚିକିତ୍ସା ନିମିତ୍ତ ଏହି ପଥ୍ୟାପଥ୍ୟ ନିର୍ଣ୍ଣୟ କଲୁଁ । ଚିକିତ୍ସକ ସମସ୍ତ ରୋଗରେ ପ୍ରଥମେ ନିଦାନ ପଥ୍ୟ ଓ ଅପଥ୍ୟ ଏ ତିନିଙ୍କି ନିର୍ଣ୍ଣୟ-କରିବ ଏବଂ କି କାରଣରୁ ରୋଗ ଜନ୍ମିଅଛି ରୋଗପକ୍ଷରେ କେଉଁ ଦ୍ରବ୍ୟ ପଥ୍ୟ କେଉଁ ଦ୍ରବ୍ୟ ଅପଥ୍ୟ ତାହା ନିର୍ଣ୍ଣୟ କରିବ ସମସ୍ତ ରୋଗରେ ପ୍ରଥମେ ନିଦାନ ନିଷେଧ କରିବାର ବିଧି ଯେପରି ଜଳ ନ ପାଇଲେ ବୃକ୍ଷମାନଙ୍କର ଅଙ୍କୁରମାନ ଶୁଷ୍କ ହୁଏ ସେହିପରି ନିଦାନ ବର୍ଜନ କଲେ କ୍ରମେକ୍ରମେ ରୋଗ ବିନଷ୍ଟ ହୁଏ । ସମସ୍ତ ରୋଗରେ ଯଥାସାଧ୍ୟ ଅପଥ୍ୟ ତ୍ୟାଗ କରିବ ତା ନ କଲେ ଗୋବରଖତରେ ଯେପରି ବୃକ୍ଷମାନେ ପୁଷ୍ଟ ହୁଅନ୍ତି ସେହିପରି ଅପଥ୍ୟରେ ରୋଗମାନେ କ୍ଲେଶଦାୟକ ହୁଅନ୍ତି ଓ ବଢ଼ନ୍ତି । ଔଷଧ ନ ଖାଇ ପଥ୍ୟରେ ରହିଲେ-ସୁଦ୍ଧା ରୋଗ ଶାନ୍ତ ହୁଏ ଅପଥ୍ୟରେ ରହିଲେ ଶତପ୍ରକାର ଔଷଧରେ ରୋଗର ଶାନ୍ତି ହୁଏ ନାହିଁ ବୁଦ୍ଧିମାନ୍ ଚିକିତ୍ସକ ପ୍ରଥମରେ ରୋଗିର ଦୋଷ ଦୂଷ୍ୟ ଦେଶ କାଳ ସାତ୍ମ୍ୟ ସତ୍ତ୍ୱ ବଳ ବୟଃକ୍ରମ ପ୍ରକୃତି ଔଷଧ ଅଗ୍ନି ଓ ଆହାର ଏମାନଙ୍କୁ ଦୃଷ୍ଟି କରି ପଥ୍ୟାପଥ୍ୟ ନିର୍ଣ୍ଣୟ କରିବ, ଯଥା ।—ଦୋଷ (ବାତପିତ୍ତ ଓ କଫ) ଏମାନଙ୍କମଧ୍ୟରୁ ରୋଗ କାହାକୁ ଆଶ୍ରା କରି ଉତ୍ପନ୍ନ

ହୋଇଅଛି ଏବଂ ବର୍ତ୍ତମାନ ଅବସ୍ଥାରେ କାହାର ବଳ ପ୍ରବଳ ତାହାକୁ ପରୀକ୍ଷା କରିବ । ଯଥା;—ଦୂଷ୍ୟ ଦ୍ୱିବିଧ ଦୂଷ୍ୟ ଓ ଦୂଷ୍ୟ; ଦୂଷ୍ୟ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା, ଶୁକ୍ର ଏ ସାତକୁ ବୋଲନ୍ତି । ଦୂଷ୍ୟ ମଳ, ମୂତ୍ର ଓ ଘର୍ମାଦି ଏମାନଙ୍କ ମଧ୍ୟରୁ କାହାର ପ୍ରଧାନ ଦୋଷ ହୋଇଅଛି ଦେଖିବାକୁ ହେବ (ଦେଶ ତିନପ୍ରକାର ଯଥା,) ଅନୂପଦେଶ ଜାଙ୍ଗଲ-ଦେଶ ସାଧାରଣଦେଶ ଏଥି ମଧ୍ୟରୁ ଆନୂପଦେଶ ବାତଶ୍ଳେଷ୍ମିକ ରୋଗ ଜନ୍ମାଏ । ଜାଙ୍ଗଲଦେଶ ବାତପୈତ୍ତିକ ରୋଗ ଜନ୍ମାଏ । ଅନୂପଦେଶ ଓ ଜାଙ୍ଗଲଦେଶ ଏ ଉଭୟ ଦେଶର ଲକ୍ଷଣଯୁକ୍ତ ସାଧାରଣଦେଶ—ଏଥିରେ ଶୀତ ଗ୍ରୀଷ୍ମ ବର୍ଷା ଓ ବାୟୁ ସମାନଭାବ ହେତୁ ବାତ ପିତ୍ତ ଓ କଫ ସମଭାବରେ ଥାଏ । (କାଳ ଯଥା,) ଦିବସ ରାତ୍ରି ଋତୁ (ବସନ୍ତାଦି) ଏବଂ ଭୋଜନ ଅଂଶକୁ ବ୍ୟାଧିର କାଳ ବୋଲାଯାଏ, ଯଥା—ଦିବସର ଆଦ୍ୟଭାଗ କଫ, ମଧ୍ୟଭାଗ ପିତ୍ତ, ପ୍ରାନ୍ତଭାଗ ବାତ । ରାତ୍ରିର ଆଦ୍ୟଭାଗ କଫ, ମଧ୍ୟଭାଗ ପିତ୍ତ, ଶେଷଭାଗ ବାତ। ଏମାନଙ୍କୁ କଫ ପିତ୍ତ ଓ ବାତର କାଳ ବୋଲାଯାଏ, ପୁନଶ୍ଚ ବସନ୍ତ କଫର ପ୍ରକୋପକାଳ ଶରତ୍କାଳ ପିତ୍ତର ପ୍ରକୋପ କାଳ, ବର୍ଷା ବାତର ପ୍ରକୋପକାଳ । (ସାତ୍ମ୍ୟ) ଯେ ସମସ୍ତ ଔଷଧ ଏବଂ ଆହାରୀୟ ପଦାର୍ଥରେ ରୋଗୀ ସୁଖଲାଭ କରେ ତାକୁ ସାତ୍ମ୍ୟ ଅର୍ଥାତ୍ ଉପଶୟ ବୋଲନ୍ତି। (ସତ୍ତ୍ୱ) ଯେ ଋତୁରେ କ୍ୱାଥ-ଦ୍ରବ୍ୟାଦିରେ ଯେତେ ଜଳ ଦେଇ ସିଦ୍ଧ କରିବାକୁ ହେବ, ଯଥା,—ମୃଦୁ ପଦାର୍ଥରେ ଜଳ ଚାରିଗୁଣ କଠିନ ଦ୍ରବ୍ୟରେ ଅଠଗୁଣ ଅତିକଠିନ (କାଷ୍ଠାଦି) ରେ ଜଳ ଷୋହଳଗୁଣ ଦେଇ ସିଦ୍ଧ କରି ଶେଷ ଏକଭାଗ ରହିବାର ଯେ ନିୟମାବଶେଷ । ( ବଳ ଦୁଇପ୍ରକାର ) ଯଥା, ରୋଗର ବଳ ଓ ଶରୀରର ବଳ ଉଭୟ ଦେଖି ଔଷଧାଦି ପ୍ରୟୋଗ କରିବ । (ବୟଃକ୍ରମ) ବାଲ୍ୟକାଳରେ କଫ ଯୌବନାବସ୍ଥାରେ ପିତ୍ତ

ବାର୍ଦ୍ଧକ୍ୟାବସ୍ଥାରେ ବାତ ପ୍ରଧାନ ହୁଏ । (ପ୍ରକୃତି ଯଥା) ବାତପ୍ରକୃତିକ ଲୋକ ଶୁଷ୍କ ରୁକ୍ଷ ଅଳ୍ପକେଶ ଚଞ୍ଚଳ ଚିତ୍ତ । ପିତ୍ତପ୍ରକୃତିକ ଲୋକର ଅଳ୍ପବୟସରେ ବାଳ ପାଚେ ଗୋରା ସ୍ୱେଦଯୁକ୍ତ କ୍ରୋଧୀ ଓ ଜ୍ଞାନବନ୍ତ ହୁଏ । କଫପ୍ରକୃତିକ ଲୋକ ସ୍ଥିରଚିତ୍ତ ସ୍ଥୂଳ (ମୋଟା) ଚିକ୍କଣ ରୂପବନ୍ତ ଓ ବାଳ ଅତ୍ୟନ୍ତ କଳା ହୁଏ । ବାତପିତ୍ତ ବାତକଫ ଓ ପିତ୍ତଶ୍ଳେଷ୍ମ ଏପରି ଦୁଇ ଦୁଇ ଲକ୍ଷଣ ଥିଲେ ଦ୍ୱନ୍ଦ୍ୱଜ ବୋଲାଯାଏ । (ଔଷଧ ।) ଯେଉଁ ଦ୍ରବ୍ୟମାନ ରୋଗର ଉପଶମକର ହୁଏ ତାହା ନାମ ଔଷଧ । (ଅଗ୍ନି ।) ଅଗ୍ନି ତିନପ୍ରକାର ହୁଏ, ଯଥା, ମନ୍ଦାଗ୍ନି ସମାଗ୍ନି ବିଷମାଗ୍ନି ଏମାନଙ୍କ ପରୀକ୍ଷା—ଯେ ଯେତେ ପ୍ରମାଣରେ ଆହାର କରେ ତହିଁରୁ କମ ହେଲେ ମନ୍ଦାଗ୍ନି ବୋଲନ୍ତି, ସମାନଭାବରେ ରହିଲେ ସମାଗ୍ନି, ବିଶେଷ ଆହାର କଲେ ବିଷମାଗ୍ନି ବୋଲାଯାଏ । (ଆହାର) ଯେ ଯାହାର ସ୍ୱାଭାବିକ ଆହାର ତଦନୁସାରେ ଏବଂ ବଳ ଓ ରୋଗ ଏମାନଙ୍କୁ ବିବେଚନା କରି ପଥ୍ୟାପଥ୍ୟର ବ୍ୟବସ୍ଥା କରିବ ।

## ଜ୍ୱରପ୍ରକରଣ ।

ଅବସ୍ଥା ନିର୍ଣ୍ଣୟ ।— ଜ୍ୱର ଆରମ୍ଭଠାରୁ ସାତଦିନ ପର୍ଯ୍ୟନ୍ତ ତରୁଣ-ଜ୍ୱର, ଆଠଦିନଠାରୁ ବାରଦିନ ପର୍ଯ୍ୟନ୍ତ ମଧ୍ୟମ ଜ୍ୱର, ବାରଦିନରୁ ଊର୍ଦ୍ଧ୍ୱ ହେଲେ ପୁରାତନ ଜ୍ୱର ବୋଲାଯାଏ ।

ତରୁଣଜ୍ୱରରେ ପଥ୍ୟ ।— ବମନ କରାଇବା ଉପବାସ ଯବାଗୁ କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ ଆହାର ସ୍ୱେଦ କରଣ ।

ଅପଥ୍ୟ । ସ୍ନାନ ବିରେଚନ ମୈଥୁନ କଷାୟ (ପାଚନାଦି) । ବ୍ୟାୟାମ, ତେଲମର୍ଦ୍ଦନ, ଦିବସନିଦ୍ରା, ଦୁଗ୍ଧ, ଘୃତ, ପିଠା, ମାଂସ, ଦହି, ମଦ, ମଧୁରଦ୍ରବ୍ୟ, ଗୁରୁଦ୍ରବ୍ୟ, ତରଳଦ୍ରବ୍ୟ, ଅନ୍ନ, ପ୍ରବଳପବନ, ଗମନାଗମନ, କ୍ରୋଧ ।

ମଧ୍ୟଜ୍ୱରରେ ପଥ୍ୟ ।— ପୁରୁଣା ଷାଠିକା ଓ ଶାଳୀଧାନର ଅନ୍ନ ବାଇ-ଗଂଣ ସଜନାଛୁଇଁ କଲରା ବେତକନ୍ଦା ଅଷଡୁଆଫଳ ପଟୋଳ କାଙ୍କଡ଼ କସିମୂଳା ମୁଗ ମସୁର ଚଣା କୁଳଥ୍ଥ ବଣମୁଗ ହରଡ଼ା ଗୁଳୁଚି ବଥୁଆ-ଶାଗ ଚକ୍ଷାଲେଉତିଆ ଜୀବନ୍ତୀସାଗ ଦାରୁହଳଦୀ ଦ୍ରାକ୍ଷା କଇଥ ଡାଳିମ୍ବ ଭଇଁଚକୋଳି ଲଘୁ ଓ ଅମ୍ଳରୁଚକ ପଥ୍ୟଦ୍ରବ୍ୟ ।

ପୁରାତନ ଜ୍ୱରରେ ପଥ୍ୟ ।— ବିରେଚନ ବମନ ଅଞ୍ଜନ ନସ୍ୟ ଧୂମପାନ ତୈଳାଦି ଦ୍ରବ୍ୟରେ ବିରେଚନ ରକ୍ତମୋକ୍ଷଣ ସଂଶମନ ପ୍ରଲେପନ ତେଲମର୍ଦ୍ଦନ ସ୍ନାନ ଶୀତଳକ୍ରିୟା ମୃଗ ଖୁରଙ୍ଗ ହରଣ ମୟୂର ଲାବ ଠେକୁଆ ତିତ୍ତିର କୁକୁଡ଼ା ବଗ କୁଳଙ୍ଗ ଶ୍ୱେତବିନ୍ଦୁଯୁକ୍ତ ମୃଗ ଚକୁଆ-ଚକ୍ୱୀ ବଣୀ ଗୃଡକପକ୍ଷି ଝିଙ୍କ ଏମାନଙ୍କ ମାଂସ ଗୋଦୁଗ୍ଧ ଗବ୍ୟଘୃତ ଛେଳିର ଦୁଗ୍ଧ ଓ ଘିଅ ହରଡ଼ା ପର୍ବତନିର୍ଝରଜଳ ଜଡ଼ାତେଲ ଶୁକ୍ଳଚନ୍ଦନ ଏପରି ପୂର୍ବୋକ୍ତ ପଥ୍ୟ ଚନ୍ଦ୍ରକିରଣ ପ୍ରିୟଜନଙ୍କ ସହିତ ମିଳନ ।

ସନ୍ନିପାତ ଜ୍ୱରରେ ପଥ୍ୟ ।— ପ୍ରଥମେ ଆମ ଓ କଫନାଶକ ତରୁଣ ଜ୍ୱରୋକ୍ତ ବମନାଦିକ୍ରିୟା କରିବ । ତତ୍ପରେ ଅବଲେହ ଅଞ୍ଜନ ନସ୍ୟ ଗଣ୍ଡୂଷଧାରଣ ପାଦ ଦୁହିଙ୍କର ମୂଳେ (ଗୋଇଠିରେ) ହସ୍ତଦ୍ୱୟର ମୂଳେ [ମଣିବନ୍ଧେ] କଣ୍ଠରେ ଦୁଇପାଖ ବେକଶିରରେ ତାତଲା ଲୁହାରେ ଦାଗ ଦେବ ଦେହରୁ ସ୍ୱେଦ (ଝାଳ) ବୋହିଲେ କୁଳଥ୍ଥ ଓ ପିପ୍ପଳୀ-ଚୂର୍ଣ୍ଣ ଘଷିବ ।

ଶେଷଆଗନ୍ତୁକ ଜ୍ୱର ବିଶେଷରେ ପଥ୍ୟ ।— କ୍ଷତଜଜ୍ୱରରେ ଅଭି-ଘାତଜ୍ୱରରେ ଘୃତପାନ ଓ ଘୃତମର୍ଦ୍ଦନ କରିବ ।କ୍ଷତରୋଗର ପଥ୍ୟ ଦେବ । ଔଷଧିଗନ୍ଧଜ ଜ୍ୱରରେ ବିଷନାଶକ ଔଷଧ ପ୍ରୟୋଗ କରିବ । କାମ-ଶୋକ ଓ ଭୟଜ୍ୱରରେ ବାୟୁନାଶକ କ୍ରିୟା ଓ ହର୍ଷଜନକ ଆଳାପ କରିବ । ମାରଣ ଉଚ୍ଚାଟନାଦି ଅଭିଶାପଜ୍ୱରରେ

ଜପ ହୋମାଦି ଔଷଧ ପ୍ରୟୋଗ କରିବ । ଦୈବଅମଙ୍ଗଳଜ ଜ୍ୱରେ ପରମେଶ୍ୱରଙ୍କଠାରେ ଭକ୍ତି ଓ ଜପ ହୋମାଦି କାର୍ଯ୍ୟ କରିବ । କ୍ରୋଧଜଜ୍ୱରରେ ପିତ୍ତନାଶକ କ୍ରିୟା କରିବ ।

କାମଜନିତଜ୍ୱରେ ସ୍ତ୍ରୀସଙ୍ଗମାଦି କ୍ରିୟା କରିବ । ଭୂତାଭିସଙ୍ଗଜଜ୍ୱରେ ଭୂତନାଶକ ଧୂପ ନସ୍ୟ ଓ ମନ୍ତ୍ରପ୍ରୟୋଗ କରିବ । ଚିନ୍ତାଜନିତଜ୍ୱରେ ମନର ସୁଖକର କ୍ରିୟା ହିତକର । ସମସ୍ତ ଜ୍ୱରେ ବିଷ୍ଣୁସହସ୍ରନାମ ଶ୍ରବଣ ବେଦଶ୍ରବଣ ଦେବତା ଓ ବ୍ରାହ୍ମଣ ଗୁରୁଜନମାନଙ୍କ ପୂଜା ବ୍ରହ୍ମଚର୍ଯ୍ୟ ଅବଲମ୍ବନ ଚାନ୍ଦ୍ରାୟଣ ବ୍ରତ ଯଜ୍ଞ ଦାନ ବ୍ରତ ଉପବାସ ଜପ ସାଧୁସମାଗମ ସତ୍ୟପରାୟଣ ରତ୍ନୌଷଧି ଧାରଣ ମଙ୍ଗଳାଚରଣ ।

ଅପଥ୍ୟ । ଚନ୍ଦନ ପୁଷ୍ପମାଳ ଧାରଣ ରକ୍ତଚନ୍ଦନ ରକ୍ତଧାରଣ ବମିବେଗଧାରଣ ହୀଣପଦାର୍ଥ ଖାଇବାର ଅତ୍ୟନ୍ତ ଭୋଜନ ପୋକଯୁକ୍ତ ଶାକାଦି ବାସିଅନ୍ନ ଶୁଷ୍କଅନ୍ନ ସଢ଼ାଦୁର୍ଗନ୍ଧ ଖାଦ୍ୟଦ୍ରବ୍ୟ ପଙ୍କମିଶ୍ରିତଜଳ ଦୁର୍ଗନ୍ଧ ପଦ୍ମପତ୍ର ନାଳୀ ଓ ତୃଣାଦି ଅଶୁଦ୍ଧିତ ଜଳ ପର୍ବତଝରପାଣି ବର୍ଷାପାଣି ନଦୀର ପ୍ରଥମ ବଢ଼ିପାଣି ଏମାନଙ୍କରେ ସ୍ନାନ ବା ଭୋଜନ ଗୁରୁପାକ ଦ୍ରବ୍ୟ (ସାରୁ ଆଳୁ ପ୍ରଭୃତି) କ୍ଷାରଦ୍ରବ୍ୟ ଅମ୍ଳଦ୍ରବ୍ୟ ପତ୍ରଶାଗ ନୂତନଧାନର ଅନ୍ନ ନୂତନ ମୁଦ୍ଗାଦି କାଗେଜ ଓ ଜମ୍ବୀରାଦି ତାମ୍ବୂଳ ତରଭୁଜ ଜେଉଟ ମାଛ ସୋରିଷ (ବେସର) ଛତୁ ନାନାପ୍ରକାର ପିଠା ଅଣ୍ଡପଦାର୍ଥ ଗୁରୁପଦାର୍ଥ ଏପରି ଜ୍ୱର ଛାଡ଼ିଲା ଉତ୍ତାରୁ ଯେ ପର୍ଯ୍ୟନ୍ତ ଅନ୍ନ ଉତ୍ତମରୂପେ ପାକ ନ ହୋଏ ସେପର୍ଯ୍ୟନ୍ତ ପରିଶ୍ରମ ସ୍ତ୍ରୀସଙ୍ଗମ ସ୍ନାନ ପଦାରେ ବୁଲିବାର ନିଷେଧ ।

ପଥ୍ୟ—(ଅତିସାର ପ୍ରକରଣ) ବମନ ଉପବାସ ଦିବସନିଦ୍ରା ପୁରୁଣାଶାଳୀ ଓ ଷାଠିକାଧାନର ଅନ୍ନ ବିଲେପୀ ଖଇମଣ୍ଡ ମସୁର ହରଡ଼ ଟେଙ୍କୁଆ ଲବ ହରିଣ ତିତିର ଏମାନଙ୍କ ମାଂସରସ ମୀନମାଛ ସିଙ୍ଗିମାଛ

ବାଲଗ୍ରୁଡ଼ି ମହୁର୍ଲୀ ମାଛ ଖସାଚେଲ ଛେଳୀର ଦୁଧ ଦହି ତକ୍ର ଲହୁଣୀ ଓ ଘିଅ, ଗୋଦୁଗ୍ଧ ଦହି ତକ୍ର ଲହୁଣୀ ଘିଅ, କପିତ୍ଥକଦଳୀ କଦଳୀଭଣ୍ଡା ମହୁ ଜାମୁଫଳ କରମଙ୍ଗା ଅଦା ଶୁଣ୍ଠୀ ବଇଁ ଓ ପଦ୍ମାଦ୍ଦର ମୂଳ ଭଇଞ୍ଚକୋଳି କଇଥ ବଉଳକୋଳି ବେଲ କେନ୍ଦୁ ମଧୁର ଡ଼ାଳମ୍ବ ଡାଳ ସୁନୁସୁନିଆ ଶାଗ ଆମ୍ବ ଡ ଗଣ୍ଡି ଅଚେସି ନାଇଫଳ ଛୁରୁବେଲ ଛଟ୍ଟ ପିତାକୋରୁଆ ଧନିଆ ମହାନମ୍ବ ଏମାନଙ୍କ କଷାୟରସ ଅଗ୍ନି ଦୀପ୍ତିକର ପଦାର୍ଥ, ଲଘୁ ପଦାର୍ଥ ନାଭିର-ତଳ ଦୁଇଅଙ୍ଗୁଳ ତଳେ ଓ ପିଠିପାଖ ଉପରଭାଗରେ ବେକମୂଳରେ ତାତଲା ଲୁହାରେ ଅର୍ଦ୍ଧଚନ୍ଦ୍ର ଆକୃତରେ ଦାଗିବ ।—

ଅପଥ୍ୟ—ସ୍ୱେଦ ଅଞ୍ଜନ ରକ୍ତମୋକ୍ଷଣ ଜଳ ପିଇବାର ସ୍ନାନ ସ୍ତ୍ରୀସଙ୍ଗମ ରାତ୍ରି-ଉଜାଗରଣ ଧୂମପାନ ନସ୍ୟ ତେଲ ମର୍ଦ୍ଦନ ମଳ ମୂତ୍ରର ବେଗ ଧାରଣ ରୂକ୍ଷ ପଦାର୍ଥ ଅସୁଖକର-ପଦାର୍ଥ ବାସିପଖାଳ ଶୁଖିଲା ଭାତ ମୁଢ଼ି ଚୂଡ଼ାଭଜାଆଦି ଗହମ ଖାର ଯବଧାନ ବଥୁଆଶାଗ ଲୁଣୀଲୁଣିଆ ଶାଗ ଶିମ୍ବ ଓଲୁଅ ସାରୁ ସଜନାପତ୍ର ଓ ଛୁଇଁ ଆମ୍ବ ପଣସ ଗୁଆ ପାଣିକଖାରୁ ଲାଉ ବରକୋଳ ଗୁରୁଦ୍ରବ୍ୟ ତାମ୍ବୂଳ ଆଖୁ ଗୁଡ଼ ମଦ ପୋଇଶାଗ ଦ୍ରାକ୍ଷା ଅମ୍ଳବେତସଫଳ ରସୁଣ ଅଁଳା ଦୁର୍ଗନ୍ଧାଦ ଜଳ ଦହି ଛେନା ତକ୍ରବୋଷି ପାଣି ନଡଆ ସ୍ନିଗ୍ଧ କ୍ରିୟା କସ୍ତୁରୀ ସମସ୍ତ ଶାଗ କ୍ଷାର ପଦାର୍ଥ ଯେ ପଦାର୍ଥ ଖାଇଲେ ଝାଡ଼ା ହୁଏ ସେ ପଦାର୍ଥମାନ ପୁରୁଣୀ ଶାଗ କାଙ୍କଡ ଲବଣପଦାର୍ଥ ଅମ୍ଳଦ୍ରବ୍ୟ ।।।।

## ଗ୍ରହଣୀପ୍ରକରଣ

ପଥ୍ୟ—ନିଦ୍ରା ବମନ ଉପବାସ ପୁରୁଣାଶାଳୀ ଓ ଷାଠିକାଧାନର ଅନ୍ନ ଖଇମଣ୍ଡ ମସୁର ହରଡ଼ ମୁଗ ଖୁଆକେଡ଼ା ଦହି ଗୋଦୁଗ୍ଧ ଲହୁଣୀ ଛେଳର ଦୁଧ ଦହି ଲହୁଣୀ ଘିଅ ଖସାଚେଲ ମଦ ମହୁ ବଇଁ ଓ ପଦ୍ମାଦ୍ଦର ମୂଳ

ବଉଳକୋଳି ଖଟା ଓ ମିଠା ଡାଳମ୍ବ ନୂତନ ଯୁବା ସ୍ତ୍ରୀ କଦଳୀଭଣ୍ଡା କସିକଦଳୀ କସିବେଲ ସିଙ୍ଘଡ଼ା ଅମ୍ଳୀଭ ଗଞ୍ଜେି କଇଥ ପିତାକୋରୁଅ କଲାଜଗ୍ଧି ବାଲକେଶର ଘୋଲଦହି କୋମଲପତ୍ରର ଶଯ୍ୟା ଜାଇଫଳ ଧନିଆ କେନ୍ଦୁ ମହାନିମ୍ବ ଅଭୋସି ଅସୁ ବାଘ ଲାବ ଠେକୁଆ କଳାହରଣ ତିତ୍ତିରପକ୍ଷି ଏମାନଙ୍କ ମାଂସ ମୀନମାଛ ବାଲିଗୁରୁଡ଼ ମହୁରାଲୀ ଖଳଶ ମାଛ କଷା ପଦାର୍ଥ ନାଭିର ଦୁଇଅଙ୍ଗୁଳ ତଳେ ପେଠିପାଖର ବେକମୂଳେ ତାତଲା ଲୁହାରେ ଅର୍ଦ୍ଧଚନ୍ଦ୍ର ପରି ଦାଗିବ ॥

ଅପଥ୍ୟ—ରକ୍ତମୋକ୍ଷଣ ଉଷ୍ଣାଗର ଜଳ ପାନ ସ୍ନାନ ସ୍ତ୍ରୀ ସଙ୍ଗମ ମଳ-ମୂତ୍ରର ବେଗ ଧାରଣ ନସ୍ୟ ଅଞ୍ଜନ ସ୍ୱେଦ ଧୂମପାନ ପରିଶ୍ରମ ଦୁଧ ମାଛ ଏକତ୍ରରେ ଭୋଜନ ଖରାରେ ବୁଲିବା ଗହମ ଶିମ୍ବ ଖିର ଯବଧାନ ଅଦା ଛତୁ ବରଗୁଡ଼ ପୁରୁଣୀ ଶାଗ ବଥୁଆ ଶାଗ ଲୁଣୀଲୁଣିଆ ଶାଗ ପାଣିକଖାରୁ ଲାଉ ରଙ୍ଗ ସଜନା ସାରୁ ଆଳୁ ଓ କନ୍ଦମୂଳାଦି ତାମ୍ବୁଳ ଅଖୁ ବରକୋଳି ପଣସ କାକୁଡ଼ି ଗୁଆ ରସୁଣ ଗୃଡ଼ଳଧୂଆ ଖଟା ପାଣି ଯବଧାନବତୁରୀ ପାଣି ଶ୍ୱେତପୁରୁଣୀ ଅକ୍ରାନ୍ତଫଳ ବାଂଶଧାନପତ୍ର ଶାଗ ଗୋଳିଆ ବା ଦୁର୍ଗନ୍ଧ ଜଳ ଗୋରମୂତ୍ର କସ୍ତୁରୀ କ୍ଷାରପଦାର୍ଥ ସାରକ ଦ୍ରବ୍ୟ ଦ୍ରାକ୍ଷା ଅମ୍ଳଦ୍ରବ୍ୟ ଲବଣ-ରସ-ଯୁକ୍ତ ଦ୍ରବ୍ୟ ଗୁରୁ ଅନ୍ନ ଓ ଗୁରୁ ପାନୀୟ ସମସ୍ତ ପେଠା ॥

## ଅର୍ଶପ୍ରକରଣ ।

ପଥ୍ୟ—ବିରେଚନ ଲେପ ରକ୍ତମୋକ୍ଷଣ କ୍ଷାରପ୍ରୟୋଗ ଅଗ୍ନିକର୍ମ ଶସ୍ତ୍ରକର୍ମ ପୁରୁଣା ରଙ୍ଗଶାଳୀ ଓ ଷାଠିକାଧାନର ଅନ୍ନ ଯବଧାନ କୁଳଥ୍ୱ ଗୋଧି କୋଳ ହାତୀ ଓଟ କଇଁଛ ଝିଙ୍କ କଙ୍କଡ଼ା ଛେଳ ଗଧ ବିରାଡ଼ି ମାକଡ଼ ବାଘ ଗୃଦ୍ଧକ ପକ୍ଷୀ ଘୋଡ଼ା ଭାଲୁଅ କୁଅ ହ ଡଗିଲା ଚଉଳ ଠେକୁଆ ପେଚା ଚଲ ଶ୍ୱେନପକ୍ଷୀ ସାଗୁଣା ପ୍ରଭୃତି ଏମାନଙ୍କର ମାଂସରସ ପଟୋଳ

ମଦରଙ୍ଗା ରସୁଣ ଚଡାମୂଳ ପୁରୁଣୀ ଓଳୁଅ ବଥୂଆଶାଗ ଜୀବନ୍ତୀଶାଗ ଆମ୍ଳିତ ମଦ ଗୁଜୁରାତି ଅଳାଇଚ ଲହୁଣୀ ତକ୍ର କାକୋଲି ଅଁଷୁଳା ଠେଭ୍ରା କଇଥ ଓଟ୍ଟମୂତ ଓଟ୍ଟଦୁଧ ଓ ଘିଅ ଭାଲ୍ଲିଆ ସୋରିଷତେଲ ଗୋରୁମୂତ୍ର ଯବଧାନ ସିଝାପାଣି ବାୟୁନାଶକ ଦ୍ରବ୍ୟ ଅଗ୍ନିକର ଅନ୍ନ ଓ ପାନୀୟ ।

ଅପଥ୍ୟ ।— ଆନୂପମାଂସ ଅର୍ଥାତ୍ ଜଙ୍ଗଲଜ ଜନ୍ତୁ ଜଳନିକଟବର୍ତ୍ତି କୂଳଚର ଜନ୍ତୁ ମାଛ ଖସାଲଡୁ ଦହି ପିଠା କ୍ଷୀର ବାଂଶଗଜା ବରଗୁଡି ବେଲ ଲାଉ ପୋଇଶାଗ ପାଚଲାଆମ୍ବ କୁମ୍ଭୁଦାଦିମୂଳ ଗୁରୁପଦାର୍ଥ ଖରା ଜଳପାନ ବମନ ବସ୍ତିକ୍ରିୟା ପୂର୍ବଦେଶ ନଦୀର ଜଳ ପଶ୍ଚିମଦେଶର ପର୍ବତର ଜଳ ପୂର୍ବଦିଗର ପବନ ମଳ ମୂତ୍ରର ବେଗଧାରଣ ସ୍ତ୍ରୀସଙ୍ଗମ ହାତୀ ଓ ଘୋଡ଼ାଦିଙ୍କ ପିଠିରେ ଚଢ଼ିବାର ବାତଜନିତ ଅର୍ଶରେ ବାତପ୍ରକୋପଦ୍ରବ୍ୟ ଓ ପିତ୍ତଜରେ ପିତ୍ତପ୍ରକୋପଦ୍ରବ୍ୟ ତ୍ୟାଗ କରିବ ରକ୍ତପିତ୍ତ ରୋଗରେ ଯେ ଯେ ପଥ୍ୟ ଲେଖାଯିବ ତାହାସବୁ ରକ୍ତଜ-ଅର୍ଶରେ ବ୍ୟବହାର କରିବ ॥

### ଅଗ୍ନିମାନ୍ଦ୍ୟାଜୀର୍ଣ୍ଣାଲସକ ବିସୂଚିକା ରୋଗ ପ୍ରକରଣ ।

ପଥ୍ୟ—କଫଜନିତ ଅଗ୍ନିମାନ୍ଦ୍ୟରେ ପ୍ରଥମେ ବମନ ପୈତ୍ତିକରେ ବିରେଚନ ବାତଜରେ ସ୍ୱେଦ କରାଇବ ନାନାପ୍ରକାର ପରିଶ୍ରମ ଅଗ୍ନିକାରକ ଦ୍ରବ୍ୟ ଲଘୁପାକ ପଦାର୍ଥ ପୁରୁଣା ସରୁଧାନର ଅନ୍ନ ଦୋରବା ଅନ୍ନ ଖଇମଣ୍ଡ ମୁଗର ସିଝାପାଣି ମଦ ମୃଗ ମୟୂର ଠେକୁଆ ଲାବପକ୍ଷୀ ଏମାନଙ୍କ ମାଂସ ମୀନମାଛ ମଦରଙ୍ଗାଶାଗ ବେତକଦା ବଥୂଆଶାଗ କସିମୂଳା ରସୁଣ ବୁଢ଼ାପାଣିକଖାରୁ କସିକଦଳୀ ସଜନାଛୁଇଁ ପଟୋଳ ବାଇଗଣ ଲେମ୍ବୁ କାକୁଡି କଲରା ଲଟାବେଙ୍କୋଳଫଳ କପୂର ପଯାରୁଣୀ ମେଣ୍ଢାଶିଙ୍ଘିଅ ଅମ୍ଳିତ ସୁନୁସୁନିଆ ଅଁଷୁଳା ନାରଙ୍ଗ ଡାଳିମ୍ବ ଯବଧାନ ଘରପୋଡିଅ ଅମ୍ଳବେତସ ଜମ୍ବୀର ଠେଭ୍ରା ମହୁ ଲହୁ-

ଣୀ ଘିଅ ତକ୍ର ଯବଧାନଭଜାଜଳ ଗୃଜ୍ଜଳଧୂଆ·ଖଣ୍ଟାପାଣି ସୋରଷମା-ଲପା ହିଙ୍ଗୁ ଲୁଣ ଅଦା ଜୁଆଣୀ ମରଚ ମେଥି ଧନିଆ ଜିରା ଦହି ତାମ୍ବୂଳ ଗରମପାଣି କୁଟୁଦ୍ରବ୍ୟ ତକ୍ତଦ୍ରବ୍ୟ ॥୦॥

ଅପଥ୍ୟ ।— ବିରେଚନ ମଳମୂତ୍ର ଓ ବାୟୁର ବେଗଧାରଣ—ଖାଇ-ବା ଦ୍ରବ୍ୟ ପାକନୋହୁଣୁ ତାଉପରେ ଖାଇବାର ହିତ ଓ ଅହିତ ଉଭୟ ପଦାର୍ଥ ଏକତ୍ରରେ ଖାଇବାର ରାତ୍ରିଉଜାଗର ଯେ ବ୍ୟକ୍ତି ଯେତେ ଖାଏ ସେଥିରୁ ଊଣା ବା ଅଧିକ ଖାଇବାର ରକ୍ତମୋକ୍ଷଣ ଖିର ଶିମ୍ବ ମାଛ ମାଂସ ପୋଇଶାଗ ଜଳପାନ ପିଠା ଜାମୁଫଳ ପଦ୍ମାଦରମୂଳ ଦହିଛେନା ଛଣ୍ଡାଦୁଧର ପାଣି ବା ଛେନା ତାଳଗଜା ତାଳସଜ ସ୍ନେହ-ପଦାର୍ଥ ଗୋଳଆ ବା ସଡାପାଣି ମୂଡ଼ୀ ଓ ଚୂଡ଼ାଭଜାଦ ଅସୁଖ ଅନ୍ନ ଓ ପାନ ବିଳମ୍ବରେ ପାକ ହେବାଦ୍ରବ୍ୟ, ଅଳସକରୋଗେ ବର୍ତ୍ତି ପ୍ରୟୋଗ ଉପବାସ ବମନ ସ୍ୱେଦ, ବିସୂଚି ରୋଗରେ ଅତିସାର ରୋଗର ପଥ୍ୟ ଦେବ ଏପର ପାଦରୁ ଶୂଳ ଉଠିଲେ ପାଦମୂଳେ ଓ ଗୁଳ୍ଫରେ ତାତଲା ଲୁହାରେ ଦାଗ ଦେବ ଅଗ୍ନି ତେଜକର ପାଚକ ଖୁଆଇବ ॥୦॥

## କୃମିପ୍ରକରଣ ।

ପଥ୍ୟ—ବିରେଚନ ନସ୍ୟ ଧୂମପାନ କଫନାଶକଦ୍ରବ୍ୟ ଶରୀରମାର୍ଜନ ପୁରୁଣା ବାଁଶଧାନ ପୁରୁଣା ରଙ୍ଗ ଲଦ୍ଧୁଧାନ ପଟୋଳ ବେତକନ୍ଦା ରସୁଣ ବଥୂଆଶାଗ ଚିତାମୂଳ ପାଲଧୂଆପତ୍ର ସୋରଷ କସିକଦଳୀ ଅଙ୍କାନ୍ତୁଫଳ ତିକ୍ତଦ୍ରବ୍ୟ ଲଳିତାପତ୍ର ମୂଷାମାଂସ ବଡଙ୍ଗ ନିମ୍ବ ହରଡା ଖସାତେଲ ସୋ-ରିଷତେଲ ଯବଧାନସିଝାଜଳ ଶୁକ୍ତ ଭୁସୋଦକ ମହୁ ପାଚିଲାତାଳ ଭାଲିଆ ଗୋରୁମୂତ ତାମ୍ବୂଳ ମଦ କସ୍ତୁରୀ ଓଷରଦୁଧ ଘିଅ ଓ ମୂତ୍ର ହିଙ୍ଗୁ ଯବଖାର ଅଜମୋଦା ଖଇର ପିତାକୋରୁଆ ଜମ୍ବୀଲ କଲରା ଜୁଆଣୀ ଦେବଦା-ରୁଖାର ଅଗୁରୁଖାର ଶିଶୁଖାର ତିକ୍ତରସ କଷାୟରସ କଟୂରସ ॥୦॥

ଅପଥ୍ୟ—ବମନ ବମନର ବେଗଧାରଣ ବରୁଦ୍ଧପାନ ବରୁଦ୍ଧ-ଭୋଜନ ଦବସ ନଦ୍ରା ଉରଲଦ୍ରବ୍ୟ ପିଠା ଅଜୀର୍ଣ୍ଣରେ ଭୋଜନ ଘିଅ ଖୀର ଦହ ପତ୍ରଶାଗ ମାଂସ ଦୁଧ ଅମ୍ଳରସ ମଧୁରରସ ।।୦।।

ପାଣ୍ଡୁ କାମଲ ହଲୀମକ ପ୍ରକରଣ ।

ପଥ୍ୟ—ବମନ ବରେଚନ ପୁରୁଣା ଯବଧାନ ଗହମ ଓ ଶାଳୀ-ଧାନରଅନ୍ନ ମୁଗ ହରଡ଼ ମସୁର ଜାଙ୍ଗଲଜ ମାଂସ ପଟୋଳ ପୁରୁଣା ପାଣିକଖାରୁ କସିକଦଳୀ ଜୀବନ୍ତୀଶାଗ ଗୋଖର ବ୍ରାହ୍ମୀ ଗୁଳୁଚ ଲେଉ-ଟୀଯ୍ଯାଶାଗ ପୁରୁଣୀ ଗଇଷ ବାଇଁଗଣ ପିଅଜ ରସୁଣ ପାଚଲାଅମ୍ବ ହର-ଡା ଗୋଲୁଖିଅଫଳ ସିଙ୍ଘିମାଛ ଗୋରୁମୂତ୍ର ଅଁଯୁଳା ତକ୍ର ଘିଅ ଖସା ତେଲ ସୌବୀର ଭୁଷୋଦକ ଲହୁଣୀ ରକ୍ତଚନ୍ଦନ ହଳଦୀ ନାଗେଶ୍ୱର ଯବଖାର ଲୌହଭସ୍ମ କଷାୟଦ୍ରବ୍ୟ କୁଙ୍କୁମ ଏପର ଦୁଇପାଦସନ୍ଧସ୍ଥାନରେ ଓ ନାଭିର ଦୁଇଅଙ୍ଗୁଳ ତଳଭାଗରେ ମୁଣ୍ଡରେ ହାତମୂଳରେ (ମଣିବନ୍ଧେ ) ସ୍ତନ ଓ କକ୍ଷ ଏଦୁହଙ୍କ ମଧ୍ୟସ୍ଥାନରେ ତାତଲା ଲୁହାରେ ଦାଗ ଦେବ ॥

ଅପଥ୍ୟ—ରକ୍ତମୋକ୍ଷଣ ଧୂମପାନ ବମିବେଗ ଧାରଣ ସ୍ୱେଦକର କ୍ରିୟା ସ୍ତ୍ରୀସଙ୍ଗମ ଶିମ୍ବ ପତ୍ରଶାଗ ହଙ୍ଗୁ ଖୀର ଜଳପାନ ଖସାହବଧାଦ୍ରବ୍ୟ ତାମ୍ବୁଲ ସୋରଷ ମଦ ମାଟୀଖାଇବା ଦବସନଦ୍ରା ତୀକ୍ଷ୍ଣ ଦ୍ରବ୍ୟ ଲବଣରସ ଶସ୍ୟଗିର ଓ ବନ୍ଧ୍ୟଗିର ଜାତ ନଦୀର ଜଳ ଅମ୍ଳଦ୍ରବ୍ୟ ଦୂଷିତ ଜଳ ବରୁଦ୍ଧ ଭୋଜନ ଗୁରୁ ଦ୍ରବ୍ୟ ବଦାହ ଦ୍ରବ୍ୟ ।

ରକ୍ତ-ପିତ୍ତ ପ୍ରକରଣ ।

ପଥ୍ୟ—ଅଧୋଗତ ରକ୍ତପିତ୍ତରେ ବମନ ଊର୍ଦ୍ଧ୍ୱଗତରେ ବରେଚନ ଅଧ ଊର୍ଦ୍ଧ୍ୱ ଉଭୟରେ ଲଙ୍ଘନ ପୁରୁଣା ଷାଠିଅ ଧାନ ଶାଳୀଧାନ କୋ-ଦୁଅ କାଙ୍ଗୁ ଉଡ଼ୀଧାନ ଯବଧାନ ସରୁଧାନର ଅନ୍ନ ମୁଗ ମସୁର ଚଣା

ହରଡ଼ ବଣମୁଗ ଚଙ୍ଗୁଡ଼ି ମାଛ ବମ୍ବମାଛ ଠେଙ୍କୁଅ କାପତା ହରଣ ଚ-ତ୍ରମୃଗ ଲାବ ଶଗ୍ଳ ପାର୍ ବଣୀ ବଗ କାର୍ଣ୍ଣୀବଗ ମେଣ୍ଢା ମୟୂର ଭଦଭ-ଦଲୀପ୍ରା କଷାୟରସ ଗୋଦୁଗ୍ଧ ଘିଅ, ଛେଳରଦୁଧ ଓ ଘିଅ ମହିଷିରଦୁଗ୍ଧ ଓ ଘିଅ ପଣସ ପିଅଳଫଳ କସିକଦଳୀ କଣ୍ଟା କେଉଁଟିଆ ଶାଗ ପଟୋଳ ବେତକନା କପୂର୍ ବୁଡ଼ାପାଣିକଖାରୁ ପାଚଲ ତାଳ ତାଳଗଜା ମଧୁରରସ ପାଚଲାକଂସିକାକୁଡ ଡାଳମ୍ବ ପେଣ୍ଡୀଖଜୁରୀ ଅଁଶୃଳା ପାନମହୁରୀ ନଡ଼ଆ କଇଁମୂଳ ସିଙ୍ଘଡ଼ା ଭୃଲ୍‌ଅ କଇଥ ପଦ୍ମାଦର ମୂଳ ଫାରସାକୋଳି ଭୂଇଁନମ୍ବ ନମ୍ବପତ୍ର ମଞ୍ଜ ଇନ୍ଦ୍ରଯବ ଲଅଛତୁ ଦ୍ରାକ୍ଷା ନବାତ ମହୁ ଆଖୁରସ ଶୀତଳଜଳ ଝରପାଣି ପାଣି ଦେହରେ ସିଞ୍ଚିବାର ସ୍ନାନ ଓ ଶିରସ୍ନାନ ଶତଧୌତଘୃତ ତେଲମର୍ଦ୍ଦନ ଚନ୍ଦନାଦି ଶୀତଳ ଦ୍ରବ୍ୟ ଲେପନ ଶୀତଳ ପବନ ଚନ୍ଦ୍ରକିରଣ ମନର ସୁଖଜନକ ବାକ୍ୟ ଧାର୍-ଗୃହ ଶୀତଳଭୂମିଗୃହ ବୈଡୂର୍ଯ୍ୟ ଓ ମୁକ୍ତାଧାରଣ କଦଳୀପତ୍ର ବା ପଦ୍ମପତ୍ର ବିଛଣାରେ ଶୟନ ରେସମୀବସ୍ତ୍ର ପରିଧାନ ଶୀତଳ ଉପବନ-ରେ ବାସ ପ୍ରିୟଙ୍ଗୁ ଚନ୍ଦନଭୂଷିତ କାମିନୀମାନଙ୍କ ସହିତ ଆଲିଙ୍ଗନ ପଦ୍ମପୁଷ୍ପ ଭୂଷିତ ନଦୀ ବା ପୁଷ୍କରଣୀ ପର୍ବତ ଝରପାଣି କର୍ପୂର ।

ଅପଥ୍ୟ—ପରିଶ୍ରମ ବାଟଚାଲିବାର ଖରା ତୀକ୍ଷ୍ଣକାର୍ଯ୍ୟ ମଲ ଓ ମୂତ୍ରର ବେଗଧାରଣ ଚଞ୍ଚଳତା ହାତି ଓ ଘୋଡାଦି ଯାନରେ ଚଢ଼ିବାର ସ୍ୱେଦ ରକ୍ତମୋକ୍ଷଣ ଧୂମପାନ ସ୍ତ୍ରୀସଙ୍ଗମ କ୍ରୋଧ କୁଲଥ୍ୱ ଗୁଡ ବାଇଁଗଣ ଖସା ଖାର ସୋରଷ ଦହି କ୍ଷାରଦ୍ରବ୍ୟ କୂଅପାଣି ତାମ୍ବୂଲ ନମ୍ବ ମଦ ରସୁଣ ଶିମ୍ବ ବିରୁଦ୍ଧଭୋଜନ କଟୁଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣରସଯୁକ୍ତଦ୍ରବ୍ୟ ବିଦା-ହିଦ୍ରବ୍ୟ ।

## ରାଜଯକ୍ଷ୍ମା-କ୍ଷତପ୍ରକରଣ ।

ପଥ୍ୟ—ମଦ ଜାଙ୍ଗଲଦେଶଜ ପକ୍ଷୀ ଓ ମୃଗାଦି ମାଂସ ମୁଗ ଷାଠି-

କାଧାନ ଗହମ ଯବଧାନ ଶାଳୀଧାନ ଦୋଷର ଅଧିକ ଥିଲେ ବଳବାନ୍ ଲୋକର ପ୍ରଥମେ ଅଳ୍ପ ବମନ କରାଇବ । ଗହମ ବଣମୂଗ ଚଣା ରକ୍ତ-ଶାଳୀଧାନ ଛେଳିର ମାଂସ ଦୁଧ ଲହୁଣୀ ଓ ଘିଅ ମାଂସଭୋଜୀ ଜନ୍ତୁର ମାଂସ ଲେହ୍ୟପଦାର୍ଥ ସୂଗ ଷାଡ଼ବ କାମ୍ବଳିକ ବେଶବାର ଶଶାଙ୍କକିରଣ ମଧୁରରସଯୁକ୍ତ ଦ୍ରବ୍ୟ ପାଚିଲାକଦଳୀ ପଣସ ଆମ୍ବ ଅମ୍ବିଳା ଖଜୁରୀ-କୋଳି ପଦ୍ମାଦିରମୂଳ ପାରିସାକୋଳି ନଡ଼ିଆ ସଜନାଛୁଇଁ ପଟୋଳ ତାଳସଜ ଦ୍ରାକ୍ଷା ପାନମହୁରୀ ସୈନ୍ଧବ ବାସଙ୍ଗପତ୍ର ଗବ୍ୟଘୃତ ମହିଷିଦହି ଛେଳି ସହିତରେ ବାସ ଛେଳିର ମଳ ଓ ମୂତ୍ର ଲେପନ ମାଛମଞ୍ଜୀ ଶିଖ-ରିଣୀ ମଦ ରସାଳା କର୍ପୂର କସ୍ତୁରୀ ଶ୍ୱେତଚନ୍ଦନ ତୈଳମର୍ଦ୍ଦନ ସୁଗନ୍ଧଦ୍ରବ୍ୟ ଲେପ ସ୍ନାନ ସୁବେଶ ବିନ୍ୟାସ ସ୍ନାନପରେ ଉତ୍ତମ ଗୃହେ ବାସ ସୁବାସ କୁସୁମମାଳା ଧାରଣ ହର୍ଷଜନକ ବାକ୍ୟ ଶ୍ରବଣ ମୃଦୁବାୟୁ ସେବନ ଗୀତ ଶ୍ରବଣ ନୃତ୍ୟ ଦର୍ଶନ ଚନ୍ଦ୍ର କିରଣ ବୀଣାବାଦ୍ୟ ରୂପବତୀ ସ୍ତ୍ରୀ ଦର୍ଶନ ଶୁଦ୍ଧ ସୁନା ମୁକ୍ତାମାଳା ଯଜ୍ଞ ଦାନ ଦେବତାପୂଜା ମନଃ-ସନ୍ତୋଷ ଅନ୍ନ ଓ ପାନୀୟ ।

ଅପଥ୍ୟ—ବିରେଚନ ମଳ-ମୂତ୍ରର ବେଗଧାରଣ ପରିଶ୍ରମ ସ୍ତ୍ରୀସଙ୍ଗମ ସ୍ୱେଦ ନେତ୍ରାଞ୍ଜନ ଉଦ୍ଗାର ସାହସିକକର୍ମ ରୂକ୍ଷ ଅନ୍ନ ଓ ପାନୀୟ ବିଷମ-ଭୋଜନ ତାମ୍ବୂଳ ତରଭୁଜ କୁଳଥି ବୀର ରସୁଣ ବାଶଗଜା ହିଙ୍ଗୁ ଅମ୍ଳପଦାର୍ଥ ତିକ୍ତପଦାର୍ଥ କଷାୟପଦାର୍ଥ କଟୁପଦାର୍ଥ ସମସ୍ତ ଶାଗ କ୍ଷାରଦ୍ରବ୍ୟ ବିରୁଦ୍ଧଭୋଜନ ଶିମ୍ବ କାଙ୍କଡ଼ ବିଦାହିଦ୍ରବ୍ୟ କଳାତୁଳସୀ ।

## କାସ-ପ୍ରକରଣ ।

ପଥ୍ୟ—ସ୍ୱେଦ ବିରେଚନ ବମନ ଧୂମପାନ ସମାନଆହାର ଶାଳୀ-ଧାନ ଷାଠିକାଧାନ ଗହମ ଘୁଅଁ ଯବଧାନ କୋଦୁଅ ବୀର ମୂଗ କୁଳଥି-ଗ୍ରାମ୍ୟମାଂସ ଉଦକମାଂସ ଆନୂପମାଂସ ଧନ୍ୱଦେଶଜ ନାନା ପ୍ରକାର ମାଂସ

ମଦ ପୁରୁଣାଘିଅ ଛେଳିର ଦୁଧ ଓ ଘିଅ ବଥୁଆଶାଗ ଲୁଣୁଲୁଣିଆ ଶାଗ ବାଇଙ୍ଗଣ କସିମୂଳା ଅକ୍ରାନ୍ତ କାଶିନ୍ଦଶାଗ ଜୀବନ୍ତୀ ସୁନୁସୁନିଆ ଦ୍ରାକ୍ଷା ମଧୁରତରଡ଼ା କୁଡ଼ ବାସଙ୍ଗ ଗୁଳୁଚ୍ଚ ଗୋରୁମୂତ୍ର ରସୁଣ ହରଡ଼ା ତ୍ରିକଟୁ ଗରମପାଣି ମହୁ ଖଇ ହବସନାଦ୍ରା ଲଘୁଦ୍ରବ୍ୟ ।

ଅପଥ୍ୟ—ବସ୍ତିକ୍ରିୟା ନସ୍ୟ ରକ୍ତମୋକ୍ଷଣ ପରିଶ୍ରମ ଦନ୍ତଘର୍ଷଣ-କାଷ୍ଠ ଖରା ଦୁର୍ଗନ୍ଧ ପବନ ଧୂଳ ପଥଭ୍ରମଣ ବିଷ୍ଟମ୍ଭୀଦ୍ରବ୍ୟ ବିଦାହୀଦ୍ରବ୍ୟ ରୁକ୍ଷଦ୍ରବ୍ୟ ଭୋଜନ ମଳ-ମୂତ୍ର-ଉଦ୍ଗାର-କାସ ଓ ବମି ଏମାନଙ୍କ ବେଗଧାରଣ ମାଛ ଆଳୁ ସାରୁ ପ୍ରଭୃତି ମୂଳଦ୍ରବ୍ୟ ସୋରିଷ ଲାଉ ପୋଇଶାଗ ଦୁଷ୍ଟଜଳ ଦୂଷିତ ଅନ୍ନ ଓ ପାନୀୟ ବହୁବଭୋଜନ ଗୁରୁ ବା ଶୀତଳ ଅନ୍ନ ଓ ପାନୀୟ ।

## ଶ୍ୱାସପ୍ରକରଣ ।

ପଥ୍ୟ—ବିରେଚନ ସ୍ୱେଦ ଧୂମପାନ ବମନ ହବସନାଦ୍ରା ପୁରୁଣା ଷାଠିକା ଧାନ ଓ ରଙ୍ଗଶାଳୀ ଧାନ କୁଳଥ ଯବଧାନ ଗହମ ଠେକୁଆ ମୟୂର ତିତ୍ତିର ଲାବ କୁକୁଡ଼ା ଶୁଆଆଦି ଧନ୍ୱଦେଶଜ ପକ୍ଷୀ ଓ ମୃଗମାଂସ ପୁରୁଣା ଘିଅ ଛେଳିର ଦୁଧ ଓ ଘିଅ ମଦ ମହୁ ଅକ୍ରାନ୍ତ ବଥୁଆ ଶାଗ ଲେଉଟିଆ ଓ ଜୀବନ୍ତୀ ଶାଗ କସିମୂଳା ପଟୋଳ ବାଇଙ୍ଗଣ ରସୁଣ ହରଡ଼ା ଲେମ୍ବୁ ମଧୁରତରଡ଼ା ଟଭି ଦ୍ରାକ୍ଷା ଗୁଳୁଚ୍ଚ କୁଡ଼ ଗରମ ପାଣି ତ୍ରିକଟୁ ଗୋରୁମୂତ୍ର କଫ-ବାତ ନାଶକ ଓ ଅନ୍ନପାନୀୟ ବକ୍ଷଦେଶର ଦୁଇପାଖରେ ହାତ ଦୁହିଙ୍କର ମଝି ଅଙ୍ଗୁଠି ମୂଳରେ ଓ କଣ୍ଠରେ ତପ୍ତ ଲୌହରେ ଦାଗ ଦେବ ॥

ଅପଥ୍ୟ—ମୂତ୍ର ଉଦ୍ଗାର ବମନ ତୃଷା ଓ କାଶ ଏମାନଙ୍କର ବେଗଧାରଣ ନସ୍ୟ ବସ୍ତିକ୍ରିୟା ଦନ୍ତକାଷ୍ଠ ଘର୍ଷଣ ପରିଶ୍ରମ ପଥ ଭ୍ରମଣ ଭାରବହନ ଧୂଳ ଖରା ବିଷ୍ଟମ୍ଭୀ ଦ୍ରବ୍ୟ ସ୍ତ୍ରୀ ସଙ୍ଗମ ବିଦାହୀ ଦ୍ରବ୍ୟ ଆନୂପମାଂସ

ତେଲରେ ଭଜାଦ୍ରବ୍ୟ ଶିମ୍ବ କଫକର ଦ୍ରବ୍ୟ ଖାଇ୍ ରକ୍ତମୋକ୍ଷଣ ପୂର୍ବଦିଗର ପବନ ଭୋଜନ ପରେ ଦୁଗ୍ଧପାନ ମେଣ୍ଢାରଦୁଧ ଓ ଘିଅ ଦୂଷିତଜଳ ମାଛ ଆଳୁ ପ୍ରଭୃତ ମୂଳ ପଦାର୍ଥ ସୋରଷ ରୂକ୍ଷ ବା ଶୀତଳ କମ୍ବା ଗୁରୁଅନ୍ନ ଓ ପାଣି ॥

## ହିକ୍କାପ୍ରକରଣ ।

ପଥ୍ୟ—ସ୍ୱେଦକ୍ରିୟା ବମନ ନସ୍ୟ ଧୂମପାନ ବିରେଚନ ନିଦ୍ରା ସ୍ନିଗ୍ଧ ଲଘୁଦ୍ରବ୍ୟ ସୈନ୍ଧବଲୁଣ ପୁରୁଣାକୁଲଥ ଗହମ ପୁରୁଣାଶାଳି ଓ ଷାଠିକାଧାନ ଯବଧାନ କଳାହରିଣ ତିତ୍ତିରି ଲାବ ପ୍ରଭୃତି ଜାଙ୍ଗଲଦେଶଜାତ ମୃଗ ଓ ପକ୍ଷିମାନଙ୍କର ମାଂସ ପାଚଲାକଇଥ ରସୁଣ ପଟୋଳ କସିମୂଳା କୂଡ଼ କଳାତୁଳସୀ ମଦ ନମ୍ବ ଉଷ୍ଣଜଳ ଝୋଲି ମହୁ ଗୋରୁମୂତ୍ର କଫବାତ ନାଶକ ଅନ୍ନ ଓ ପାନୀୟ ଦ୍ରବ୍ୟ ଶୀତଳଜଳରେ ସେକ ହଠାତ୍ ତ୍ରାସଜନକ ବିସ୍ମୟଜନକ ଭୟଜନକ କ୍ରୋଧଜନକ ହର୍ଷଜନକ ପ୍ରିୟଜନ ବିଚ୍ଛେଦାଦି ଜନିତ ଉଦ୍ବେଗ ପ୍ରାଣାୟାମ ସେବା କରିବା ପୋଡ଼ା ମାଟିରେ ଜଳ ସିଞ୍ଚି ତାହା ଶୁଙ୍ଘିବା ଭ୍ରୂମଧ୍ୟରେ ଜଳଧାର୍ ନାଭିର ଉପରଭାଗରେ ପୀଡ଼ନ ପାଦର ଦୁଇ ଅଙ୍ଗୁଳ ଊର୍ଦ୍ଧ୍ୱେ ନାଭିର ଦୁଇ ଅଙ୍ଗୁଳ ଉପରେ ହଳଦୀ ପୋଡି ତହିଁରେ ଦାଗିବ ॥

ଅପଥ୍ୟ—ବାୟୁ ମୂତ୍ର ଉଦ୍ଗାର କାଶ ମଳ ଏମାନଙ୍କର ବେଗଧାରଣ ଧୂଳି ବାୟୁ ଖରା ଆୟାସଜନକ-କର୍ମ ବିରୁଦ୍ଧଭୋଜନ ବିଷ୍ଟମ୍ଭୀଦ୍ରବ୍ୟ ବିଦାହିଦ୍ରବ୍ୟ ରୁକ୍ଷଦ୍ରବ୍ୟ କଫକର ଦ୍ରବ୍ୟ ଶିମ୍ବ ପିଠା ଖାଇ ପିନ୍ୟାକ ଅନୂପଦେଶଜ ମାଂସ ମେଣ୍ଢାର ଦୁଧ ଦନ୍ତଘର୍ଷଣ ବସ୍ତିକ୍ରିୟା ମାଛ ସୋରଷ ଅମ୍ଳଦ୍ରବ୍ୟ ଲାଉ କନ୍ଦଶାଗ ତେଲରେ ପ୍ରସ୍ତୁତ ଦ୍ରବ୍ୟ ପୋଇ ଶାଗ ଗୁରୁ କମ୍ବା ଶୀତଳ ଅନ୍ନ ପାନୀୟ ।

## ସ୍ୱରଭେଦପ୍ରକରଣ ।

ପଥ୍ୟ—ସ୍ୱେଦ ବସ୍ତିକ୍ରିୟା ଧୂମପାନ ବିରେଚନ କବଳଧାରଣ ନସ୍ୟ କପାଳର ଶିରରେ ଦାଗ ଯବଧାନ ରଙ୍ଗଶାଳୀଧାନ ହଂସ ବଣକୁକ୍କୁଡ଼ା ମୟୂର ଏମାନଙ୍କ ମାଂସ ମଦ ଗୋଖର ଲୁଣଲୁଣିଆ ଜୀବନ୍ତୀ ଶାଗ କସିମୂଳା ଦ୍ରାକ୍ଷା ହରଡ଼ା ଝେଭ୍ ରସୁଣ ଲୁଣ ଅଦା ଧାମୂଳ ମରିଚ ଘିଅ ॥୦॥

ଅପଥ୍ୟ—କସିବେଲ ବଉଳକୋଳ ପଦ୍ମାଦରମୂଳ ଯାମୁଫଳ କେନ୍ଦୁ କଷାୟଦ୍ରବ୍ୟ ବମନ ନିଦ୍ରା ବାକ୍ୟ କହିବାର ଅହ୍ନପରେ ଦୁଗ୍ଧପାନ ।

## ଅରୁଚପ୍ରକରଣ ।

ପଥ୍ୟ—ବସ୍ତିକ୍ରିୟା ବିରେଚନ ରୋଗୀର ବଳାବଳଅନୁସାରେ ବମନ ଧୂମପାନ କବଳଧାରଣ ତିକ୍ତରସଯୁକ୍ତ ଦନ୍ତକାଷ୍ଠ ହିତକର ଅନ୍ନ ଓ ପାନୀୟ ଗହମ ମୁଗ ରଙ୍ଗଶାଳୀଧାନ ଷାଠିକାଧାନ ବିଷ୍ଟିହ ଛେଳି ଠେକୁଆ କଳାହରିଣ ଏମାନଙ୍କ ମାଂସ ଚେଙ୍ଗମାଛର ହିହନ ମହୁ-ରାଳ ଇଲିସି ପ୍ରୋଷ୍ଠୀ ଖଳିଶ କଉ ରୋହି ଏମାଛମାନ ପୁରୁଣାପାଣିକ-ଖାରୁ ବେତକନ୍ଦା କସିମୂଳା ବାଇଗଣ ସଜନାକୁଇଁ କଦଳୀ ଡାଳିମ୍ବ କରମଙ୍ଗା ପଟୋଳ ଝେଭ୍ ଘିଅ ଦୁଧ ଛାଲସଜ ରସୁଣ ଓଲୁଅ ଦ୍ରାକ୍ଷା ପଣସ ନିମ୍ବ କାଞ୍ଜି ମଦ ରସାଲା ଦହି ତକ୍ର ଅଦା କାକୋଳି ଖଜୁରୀ ପିଆଲଫଳ ପାଚିଲାକେନ୍ଦୁ ପାଚିଲାକଇଥ ବରକୋଳି ଭଇଁଚକୋଳି ତାଲଗଜା କର୍ପୂର ନବାତ ହରଡ଼ା ଜୁଆଣି ମରିଚ ହିଙ୍ଗୁ ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ତିକ୍ତଦ୍ରବ୍ୟ ଶରୀରମାର୍ଜନା ।

ଅପଥ୍ୟ—କାଶ ବମନ କ୍ଷୁଧା ଅଶ୍ରୁ ଏମାନଙ୍କ ବେଗଧାରଣ ଅରୁଚ-ଦ୍ରବ୍ୟ ଭୋଜନ ରକ୍ତମୋକ୍ଷଣ କ୍ରୋଧ ଲୋଭ ଭୟ ଶୋକ ଦୁର୍ଗନ୍ଧ କୁ-ତ୍ସିତରୂପ ଦର୍ଶନ ।

## ଛର୍ଦ୍ଦିପ୍ରକରଣଂ ।

ପଥ୍ୟ ।— ବିରେଚନ ବମନ ଉପବାସ ସ୍ନାନ ଶରୀରମାର୍ଜ୍ଜନ ଖଇମଣ୍ଡ ପୁରୁଣା ଷାଠିକା ଓ ଶାଲୀଧାନ ମୁଗ ବିରି ଗହମ ଯବଧାନ ମହୁ ଠେକୁଆ ମୟୂର ତିତ୍ତିର ଲାବପକ୍ଷିପ୍ରଭୃତି ଜାଙ୍ଗଲଦେଶଜ ମୃଗ ଓ ପକ୍ଷି ନାନାପ୍ରକାର ସୁଗନ୍ଧଯୁକ୍ତ ମାଂସ ଷାଡ଼ବ ରାଗ ଖଡ଼ଯୂଷ କାମ୍ବ-ଳିକ ମଦ୍ୟ ବେତକନ୍ଦା ଧନିଆ ନଡିଆ କମ୍ଳାଲ ଅମ୍ବିଳା ଆମ୍ବ ବର-କୋଳି ଦ୍ରାକ୍ଷା ପାଚଲା କଇଥ ହରଡ଼ା ଡାଳିମ୍ବ ଝେଭି ଜାଇଫଳ ପାଣିମୁଥା ନିମ୍ବ ବାସଙ୍ଗ ନବାତ ସର୍ଜ୍ଜ ନାଗେଶ୍ୱର ମନର ପ୍ରୀତିକର-ପଦାର୍ଥ ଭୋଜନପର ମୁଖରେ ଜଳସେଚନ କସ୍ତୁରୀ ଚନ୍ଦନ ଚନ୍ଦ୍ର-କିରଣ ସୁଗନ୍ଧଦ୍ରବ୍ୟ ଲେପ ସୁଗନ୍ଧପୁଷ୍ପ ସୁଗନ୍ଧ ପତ୍ର ସୁଗନ୍ଧଫଳ ସେବନ ଯେବ୍ୟକ୍ତିର ଯେପରି ରୁଚି ତଦ୍ରୂପ ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଏମାନଙ୍କ ସେବା ନାଭିର ତିନଙ୍ଗୁଳ ଉପରେ ତପ୍ତଲୋହରେ ଦାଗ ଦେବା ॥ ୦ ॥

ଅପଥ୍ୟ ।— ନସ୍ୟ ବସ୍ତିକ୍ରିୟା ସ୍ୱେଦ ସ୍ନେହ ପାନ ରକ୍ତମୋକ୍ଷଣ ଦନ୍ତଘର୍ଷଣ ନବାନ୍ନ କୁତ୍ସିତପଦାର୍ଥ ଦେଖିବାର ଭୟ ଉଦ୍ବେଗ ଉଷ୍ଣ-ଦ୍ରବ୍ୟ ସ୍ନେହଦ୍ରବ୍ୟ ଆହାର ଅରୁଚିଦ୍ରବ୍ୟ ବିରୁଦ୍ଧଦ୍ରବ୍ୟ ଶିମ୍ବ କଂସିକା-ଭୁଜି ମହୁଲ ଚଢାମୂଳ ଗୁଳୁରାତି ସୋରିଷ ଦେବଦାରୁ ବ୍ୟାଘ୍ରୀମ ଛତୁ ରସାଞ୍ଜନ ॥ ୦ ॥

## ତୃଷ୍ଣାପ୍ରକରଣ ।

ପଥ୍ୟ ।— ଶୋଧନ ଔଷଧ ଶମନ-ଔଷଧ ନିଦ୍ରା ସ୍ନାନ କବଳ-ଧାରଣ ଜିଭତଳ ଦୁଇଶିରାକୁ ଦୀପନିଆଁରେ ହଳଦୀ ପୋଡ଼ି ଦାଗିବ କୋଦୁଅ ଶାଳୀଧାନ ପେୟା ବିଲେପି ଖଇଛତୁ ଅନ୍ନମଣ୍ଡ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ନବାତ ରାଗ ଷାଡ଼ବ ଭଜାମୁଗ ମସୁର ଚଣା କଦଳୀଭଣ୍ଡା ଦ୍ରାକ୍ଷା ଘିରପୋଡିଆ ତେଜପତ୍ର କଇଥ ବରକୋଳି

ଚଳୁଳ ପାଣିକଖାରୁ ପୋଇସାଗ ଖଜୁରିକୋଳ ଡାଳମ୍ବ ଅଗ୍ନିଳା କାକୁଡ଼ି ନାମ୍ବ ଜମ୍ବୀଲ କରଞ୍ଜ ଠଭା ଲେମ୍ବୁ ଗୋଦୁଗ୍ଧ ମହୁଲ କୁରୁବେଲ ତିକ୍ତ-ଦ୍ରବ୍ୟ ମଧୁରଦ୍ରବ୍ୟ ତାଲସଜପାଣି ଶୀତଳଜଳ ପଇଡ଼ପାଣି ମହୁ ପୁଷ୍କ-ରଣୀ ଜଳ ସର୍ପ ନାଗେଶ୍ୱର ଅଳାଇଚ ଯାଇଫଳ ହରଡ଼ା ଧନିଆ ଝାଙ୍ଗଣା କର୍ପୂର ଚନ୍ଦନ ଚନ୍ଦ୍ରକିରଣ ଥଣ୍ଡାଜଳ ଥଣ୍ଡାପବନ ଚନ୍ଦନ-ଲେପିତସ୍ତ୍ରୀ ଆଲିଙ୍ଗନ ରତ୍ନାଭରଣ ଶୀତଳପ୍ରଲେପ ॥ ୦ ॥

ଅପଥ୍ୟ ।— ତେଲ ଘିଅ ଏକତ୍ରରେ ଭୋଜନ ଅଞ୍ଜନ ସ୍ୱେଦ ଧୂମପାନ ଦଣ୍ଡକର୍ଷଣାଦ୍ଦ ନସ୍ୟ ଖରା ଦନ୍ତଘର୍ଷଣ ଗୁରୁଦ୍ରବ୍ୟ ଅମ୍ଳ ଓ ଲବଣରସଯୁକ୍ତ ଦ୍ରବ୍ୟ କଷା କଟୁଦ୍ରବ୍ୟ ସ୍ତ୍ରୀସଙ୍ଗମ ଦୂଷିତଜଳ ଉଷ୍ଣଦ୍ରବ୍ୟ ॥ ୦ ॥

## ମୂର୍ଚ୍ଛା-ପ୍ରକରଣ ।

ପଥ୍ୟ । ପାଣି ଦେହରେ ଛିଞ୍ଚି ଦେବାର ସ୍ନାନ ମଣି ଓ ପୁଷ୍ପମାଳା ଧାରଣ ଶୀତଳଲେପ ବିଚଣାପବନ ଶୀତଳ ଓ ସୁବାସ ପାନୀୟ ଧାରାଗୃହ ଚନ୍ଦ୍ରକିରଣ ଧୂମ ଅଞ୍ଜନ ନସ୍ୟ ରକ୍ତମୋକ୍ଷଣ ଅଗ୍ନିକର୍ମ ସୂଚି-ରେ ଫୋଡିବା ଲୋମ ଓ ମସ୍ତକର ବାଳ ଆକର୍ଷଣ ନଖରେ ଓ ଦ-ନ୍ତରେ ଘାତ କରିବାର ନାସା ଓ ମୁଖର ପବନ ବନ୍ଦ କରିବାର ବିରେଚନ ବମନ ଲଙ୍ଘନ କ୍ରୋଧ ଭୟ କଷ୍ଟସ୍ଥାନରେ ଶୟନ ନାନା-ବିଧ ମନୋହର ବାକ୍ୟ ଛାୟା ବରଷାପାଣି ଶତଧୌତ ଘୃତ ମୃଦୁଦ୍ରବ୍ୟ ତିକ୍ତଦ୍ରବ୍ୟ ଖଇମଣ୍ଡ ପୁରୁଣା ଯବଧାନ ରଙ୍ଗଶାଳୀଧାନ ଦଶବର୍ଷରୁ ଊର୍ଦ୍ଧ୍ୱ ପୁରୁଣାଘିଅ ମୁଗସିଝାଜଳ ମଠର ଧନ୍ୱଦେଶଜମୃଗ ଓ ପକ୍ଷିମାନଙ୍କ ମାଂସଯୂଷ ଶାଗ ଷାଡବ ଗୋଦୁଗ୍ଧ ନବାତ ପୁରୁଣା ପାଣିକଖାରୁ ପଟୋଳ ମୋଚରସ ହରଡା ଡାଳମ୍ବ ନଡଆ ମହୁଲ ଲେଉଟୀଆଶାଗ ପୋଇଶାଗ ଲଘୁଅନ୍ନ ଉତ୍କୃଷ୍ଟ ଜଳ ଶ୍ୱେତଚନ୍ଦନ କର୍ପୂରଜଳ କର୍ପୂର ଅତିଶୟ

ଗମ୍ଭୀରଶବ୍ଦ ଅପୂର୍ବ ଦର୍ଶନ ଲୋକରେ ଗାଇବା ଓ ବଜାଇବା ପରିଶ୍ରମ ସ୍ତୁତି ଚନ୍ତା ବ୍ରହ୍ମଜ୍ଞାନ ଧୈର୍ଯ୍ୟ ।

ଅପଥ୍ୟ । ତାମ୍ବୂଲ ପତ୍ରଶାଗ ଦନ୍ତଘର୍ଷଣ ଖରା ବିରୁଦ୍ଧପାନ ଓ ଅନ୍ନ ସ୍ତ୍ରୀସଙ୍ଗମ ସ୍ୱେଦ କଟୁଦ୍ରବ୍ୟ ତୃଷାବେଗରୋଧ ନିଦ୍ରାବେଗଧାରଣ ତକ୍ର ।

## ମଦାତ୍ୟୟ-ପ୍ରକରଣ ।

ପଥ୍ୟ । ବିଶେଷ ମଦ୍ୟପାନରୁ ବିକୃତି ଜାତ ହେଲେ ସଂଶୋଧନ ଔଷଧ ସଂଶମନ ଔଷଧ ନିଦ୍ରା ଉପବାସ ପରିଶ୍ରମ ପୁରୁଣାଶାଲୀ ଓ ଷାଠିକାଧାନ ଯବଧାନ ମୁଗ ବୀର ଗହମ ମଠର ଖଗ ଷାଡ଼ବ ମୃଗ ତିତ୍ତିର ଲାବ ଛେଳ କୁକୁଡ଼ା ମୟୂର ଠେକୁଆ ଏମାନଙ୍କ ମାଂସ ବେସବାର ମନରୁଚ୍ୟ ନାନାବିଧଅନ୍ନ ମଦ ଦୁଧ ଚିନି ଲେଉଟିଆଶାଗ ପଟୋଳ ଫିଣ୍ଟି ପାରସାକୋଲି ଖର୍ଜୂରି ଡାଳିମ୍ବ ଅଁଳା ନଡଆ ଦ୍ରାକ୍ଷା ପୁରୁଣାଘିଅ କର୍ପୂର ଉଲ୍ଲଷ୍ଣଜଳ ଶୀତଳପବନ ଜଳପୂର୍ଣ୍ଣ ଗୃହ ଚନ୍ଦ୍ରକିରଣ ମଣିଧାରଣ ଅତ୍ୟନ୍ତ ପ୍ରିୟଜନ ସହିତରେ କଥୋପକଥନ ରେସମୀଲୁଗା ସ୍ତ୍ରୀଆଲିଙ୍ଗନ ଲୋକରେ ଗାଇବାର ଶୀତଳଜଳ ଚନ୍ଦନ ସ୍ନାନ ।

ଅପଥ୍ୟ । ସ୍ୱେଦ ଅଞ୍ଜନ ଧୂମପାନ ନସ୍ୟ ଦନ୍ତକୁ ଦନ୍ତ ଘଷିବାର ତାମ୍ବୂଲ ।

## ଦାହ-ପ୍ରକରଣ ।

ପଥ୍ୟ । ଶାଳୀ ଓ ଷାଠିକାଧାନ ମୁଗ ମସୁର ଚଣା ଯବଧାନ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କର ମାଂସ ଖଇମଣ୍ଡ ଖଇଛତୁ ନବାତ ଶତଧୌତ ଘୃତ ଦୁଗ୍ଧ ଲହୁଣୀ ପାଣିକଖାରୁ କାଙ୍କଡ କଦଳୀ ପଣସ ମଧୁରଡାଳିମ୍ବ ପଟୋଳ ଘରପୋଡଅ ଦ୍ରାକ୍ଷା ଅଁଳା ପରୁଷଫଳ କଇଁସିକାକୁଡ ଲାଉ ପଇଡ ଖଜୁରିକୋଲି ଧନିଆ ପାନମହୁରି ତାଳସଜ ଅଳଫଳ ସିଙ୍ଘଡା ପଦ୍ମାଦିରମୂଳ ମହୁଲ କୁରୁବେଲ ହରଡା ତକ୍ର-

ଦ୍ରବ୍ୟ ଶୀତଳଲେପ ଭୂମିଗୃହ ପରସେଚନ ତୈଳାଦିମର୍ଦ୍ଦନ ଦେହରେ ଗାଧୋଇବାର ସ୍ନାନ ପଦ୍ମପତ୍ର ନୀଲୋତ୍ପଳ-ପତ୍ରଶଯ୍ୟା ରେସମୀବସ୍ତ୍ରଶଯ୍ୟା ଶୀତଳଅରଣ୍ୟ ନାନାବିଧ ମନୋହରବାକ୍ୟ ଗୀତବାଦ୍ୟନ ଶୀତଳ ଦ୍ରବ୍ୟ କୋକିଳାଦିଙ୍କସ୍ୱର ବେଣାଚେର ଚନ୍ଦନଲେପନ ଶୀତଳଜଳ ଓ ପ-ବନ ଧାରାଗୃହ ସ୍ତ୍ରୀସହିତବାସ ଉତ୍କୃଷ୍ଟଜଳ କର୍ପୂର ଚନ୍ଦ୍ରକିରଣ ରତ୍ନ-ଧାରଣ ମଧୁରରସଯୁକ୍ତ ଦ୍ରବ୍ୟ ଏ ପର ମଦାତ୍ୟୟ ରୋଗର ପଥ୍ୟ ଓ ପିତ୍ତନାଶକ ଦ୍ରବ୍ୟ ।

ଅପଥ୍ୟ । ବିରୁଦ୍ଧ ଅନ୍ନ ଓ ପାନୀୟ କ୍ରୋଧ ମଳ ଓ ମୂତ୍ରର ବେଗ-ଧାରଣ ହସ୍ତୀ ଅଶ୍ୱାଦି ଯାନ ପଥଭ୍ରମଣ କ୍ଷାର ପିତ୍ତନାଶକ ଦ୍ରବ୍ୟ ବ୍ୟାୟାମ ଖରା ତକ୍ର ତାମ୍ବୂଳ ମଦ୍ୟ ହିଙ୍ଗୁ ସ୍ତ୍ରୀସଙ୍ଗମ କଟୁ ତୀକ୍ଷ୍ଣ ଓ ଉଷ୍ଣଦ୍ରବ୍ୟ ।

ଉନ୍ମାଦ-ପ୍ରକରଣ ।

ପଥ୍ୟ । ବାତଉନ୍ମାଦରେ ତୈଳାଦି ପ୍ରୟୋଗ ପିତ୍ତଉନ୍ମାଦରେ ବିରେଚନ କଫୋନ୍ମାଦରେ ବମନ ପ୍ରୟୋଗ କରିବ ବସ୍ତିକ୍ରିୟା ନସ୍ୟ ଗାଳଦେବା ମାରିବା ଅଞ୍ଜନ ଆଶ୍ୱାସନାବାକ୍ୟ ବନ୍ଧନ ଭୟପ୍ରଦାନ ହର୍ଷ ଧୂପ ଇନ୍ଦ୍ରିୟନିଗ୍ରହ ପ୍ରଲେପ ଶିରାମାନଙ୍କରେ ଦାଗ ସଂଶମନ ଔଷଧ ମୁହଁରେ ପାଣି ଛାଟିବାର ବିଚିତ୍ରକାର୍ଯ୍ୟ ଧୂମପାନ ବୁଦ୍ଧିର ଧୀରତା ଆପଣାକୁ ଆପେ ଉତ୍ତମଜ୍ଞାନ କରିବାର ତୈଳମର୍ଦ୍ଦନ ସ୍ନାନ ଅବସ୍ଥିତ ନିଦ୍ରା ଶୀ-ତଳ ପ୍ରଲେପ ଗହମ ମୁଗ ରଙ୍ଗଶାଳୀଧାନ ଧାରୋଷ୍ଣଦୁଧ ଶତଧୌତଘୃତ ନୂତନଘିଅ ପୁରୁଣାଘିଅ କଇଁଛମାଂସ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ସିଲାରସ ପୁରୁଣା ପାଣିକଖାରୁ ପଟୋଳ ବ୍ରାହ୍ମୀଶାଗ ବଥୁଆଶାଗ ଫେଲଉଟିଆ ଶାଗ ଗଧମୂତ ଘୋଡାମୂତ ବରଷାପାଣି ହରଡା ସୁବର୍ଣ୍ଣଭସ୍ମ ନଡଆ ଦ୍ରାକ୍ଷା କଇଥ ପଣସ ଏମାନେ ପଥ୍ୟ ଏପର କାମ ଶୋକ ଭୟ କ୍ରୋଧ

ହର୍ଷ ଈର୍ଷା ଓ ସ୍ନେହଭଙ୍ଗଜନ୍ୟ ଉନ୍ମାଦରେ ଏମାନଙ୍କ ବିପରୀତ କ୍ରିୟାରେ ଶାନ୍ତ କରିବ ପ୍ରିୟଦ୍ରବ୍ୟ ବିନଷ୍ଟ ଉନ୍ମାଦରେ ଯେଦ୍ରବ୍ୟ ନଷ୍ଟ ହୋଇ-ଥାଏ ତତ୍ତୁଲ୍ୟ ଦ୍ରବ୍ୟ ଦେଇଁ ଅଥବା ଆଶ୍ୱାସନା ବାକ୍ୟରେ ଶାନ୍ତ କରାଇବ ଦେବର୍ଷି-ପୀଡ଼ିତ ଗନ୍ଧର୍ବ ଓପିତୃଗ୍ରହ-ପୀଡ଼ିତ ଉନ୍ମାଦରେ ତୀକ୍ଷ୍ଣନସ୍ୟ ଅଞ୍ଜନ କୁତ୍ସିତକର୍ମ ତ୍ୟାଗ କରିବ ଭୂତଗଣଙ୍କୁ ପୂଜା ବଳି ଉପହାରାଦି ଶାନ୍ତିକର୍ମ ଯଜ୍ଞ ଇଷ୍ଟମନ୍ତ୍ରଜପ ଦାନ ସ୍ୱସ୍ତ୍ୟୟନ ବ୍ରତନିୟମ ସତ୍ୟବ୍ରତ ଜପ ମଙ୍ଗଳାଚରଣ ପ୍ରାୟଶ୍ଚିତ୍ତ ଅଞ୍ଜନବିଧି ରତ୍ନୌଷଧି ଧାରଣ ଏପର ରୋଗୀ ଯେ ଭୂତଦ୍ୱାରା ପୀଡ଼ିତ ହୁଏ ସେହିଭୂତାନୁରୂପ ଇଷ୍ଟା-ଚରଣ ଶିବପୂଜା ଦେବାଦି ପୀଡ଼ିତ ଉନ୍ମାଦରେ ହିତକର ପୃଥିବୀରେ ଯେ ସମସ୍ତ ଗୁହ୍ୟକ ଦେବୀଗଣମାନେ ବ୍ୟବହାର କରନ୍ତି ସେମାନଙ୍କ ପୂଜା ଦେବତା ଓ ବ୍ରାହ୍ମଣମାନଙ୍କ ଅର୍ଚ୍ଚନା ॥୦॥—

ଅପଥ୍ୟ । ମଦ୍ୟ ବିରୁଦ୍ଧଭୋଜନ ଉଷ୍ଣଦ୍ରବ୍ୟ ଭୋଜନ ନିଦ୍ରାବେଗ ରୋଧ କ୍ଷୁଧା ତୃଷା ବେଗଧାରଣ ସ୍ତ୍ରୀସଙ୍ଗମ ଅପାଳୁଆଫଳ କଲରା ପନ୍ତ ଶାଗ ତିକ୍ତଦ୍ରବ୍ୟ କଇଁସିକାକୁଡ଼ି ।

## ଅପସ୍ମାର-ପ୍ରକରଣ ।

ପଥ୍ୟ । ବାତଜ ଅପସ୍ମାରରେ ବସ୍ତିକ୍ରିୟା ପିତ୍ତଜରେ ବିରେଚନ କଫଜରେ ବମନ ଧୂପ ଅଞ୍ଜନ ନସ୍ୟ ଶିରମାନଙ୍କରେ ଦାଗ ଶଙ୍କା-ଜନ୍ମାଇବାର ଭୟ ଭର୍ତ୍ସନା ପୀଡ଼ନ ହର୍ଷ ଧୂମପାନ ବିସ୍ମୟଜନକ ବାକ୍ୟ ବୁଦ୍ଧିର ଧୀରତା ଆତ୍ମାଦି ବିଜ୍ଞାନ ସ୍ନାନ ତୈଳମର୍ଦ୍ଦନ ରଙ୍ଗଶାଳୀ ଧାନ ମୁଗ ଗହମ ପୁରୁଣା ଘିଅ କଇଁଛମାଂସ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ଦୁଧ ବ୍ରାହ୍ମୀଶାଗ ବଡ ପଟୋଳ ବୁଢ଼ାପାଣିକଖାରୁ ବଥୁଆଶାଗ ମଧୁରତାଳକମ୍ବ ସଜନାକୁଇଁ ପଇଡ଼ ଦ୍ରାକ୍ଷା ଅଁଳା ପରୁଷଫଳ ଖସାମାଲ୍ପା ଗଧମୂତ୍ର ଘୋଡ଼ାମୂତ୍ର ଅନ୍ତରୀକ୍ଷଜଳ ହରିଡ଼ା ।

ଅପଥ୍ୟ । ଚିନ୍ତା ଶୋକ ଭୟ କ୍ରୋଧ ଅଶୁଚିଦ୍ରବ୍ୟ ଭୋଜନ ମଦ ମାଛ ବିରୁଦ୍ଧଦ୍ରବ୍ୟ ତୀକ୍ଷ୍ଣଦ୍ରବ୍ୟ ଉଷ୍ଣଦ୍ରବ୍ୟ ଗୁରୁଦ୍ରବ୍ୟ ଭୋଜନ ଅତ୍ୟନ୍ତ ସ୍ତ୍ରୀସଙ୍ଗମ ପରିଶ୍ରମ ପୂଜ୍ୟବ୍ୟକ୍ତିଙ୍କ ଅପମାନ ଦେବା ପତ୍ର ଶାଗ କଇଁସି-କାକୁଡ଼ି ଅଷାଢ଼ୁଆଫଳ ତୃଷା କ୍ଷୁଧା ନିଦ୍ରା ଏମାନଙ୍କ ବେଗଧାରଣ ।

ବାତରୋଗ-ପ୍ରକରଣ ।

ପଥ୍ୟ । ତୈଳାଭ୍ୟଙ୍ଗ ଅଙ୍ଗମର୍ଦ୍ଦନ ବସ୍ତିକ୍ରିୟା ସ୍ନେହ ପ୍ରୟୋଗ ସ୍ୱେଦ ଅବଗାହନ ଉଦ୍ୱର୍ତ୍ତନ ଫଣମନ ଔଷଧ ବସ୍ତ୍ରରେ ଶରୀର ଘୋଡ଼ାଇବା ବାୟୁ ବର୍ଜନ ଅଗ୍ନି କର୍ମ ପ୍ରଲେପ ଭୂମିଶଯ୍ୟନ ସ୍ନାନ ଉପବେଶନ ତୈଳ-ପୂର୍ଣ୍ଣ କୁଣ୍ଡରେ ଗାଧୋଇବାର ଶିରୋବସ୍ତି ଶଯ୍ୟନ ନସ୍ୟ ସୂର୍ଯ୍ୟକିରଣ ସନ୍ତର୍ପଣକ୍ରିୟା ପୁଷ୍ଟିକରଦ୍ରବ୍ୟ ଦୁଧଛେନା ଦହିଛେନା ଘିଅ ତେଲ ବଷା ମଜ୍ଜା ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣଦ୍ରବ୍ୟ ଗହମ ଖୀର ଖସା ପୁରୁଣା ଶାଲୀ ଓ ଷାଠିକା ଧାନର ଅନ୍ନ କୁଲଥ୍ୱ ମଦ ଗୋରୁ ଅଶ୍ୱତର ଗଧ ଓ ଛେଳ ପ୍ରଭୃତି ଗ୍ରାମ୍ୟ ପଶୁମାନଙ୍କ ମାଂସ ବରାହ ମଇଁଷି ବହୁ ଶୃଙ୍ଗ-ଯୁକ୍ତ ମୃଗ ଗଣ୍ଡା ହାତୀ ପ୍ରଭୃତିଙ୍କ ମାଂସ ହଂସ କଲହଂସ ଚକ୍ରବାକ ମଦ୍‌ଗୁ ବଗ ପ୍ରଭୃତି ଉଦକ ମାଂସ ବେଙ୍ଗ ଗୋଧି ନେଉଳ ଶଜାରୁ ପ୍ରଭୃତି ବିଲେଶୟ ଜନ୍ତୁମାନଙ୍କ ମାଂସ ଚଟକ କୁକୁଡ଼ା ମୟୂର ତିତ୍ତିରି-ପ୍ରଭୃତି ଜାଙ୍ଗଲ ମାଂସ ଶିଳନ୍ଦମାଛ ପଙ୍କତମାଛ କୁମ୍ଭୀର ଗାଗର କଉ ଇଲିଶୀ ବୃଲୁକା କଇଁଛ ଶିଶୁକ ଭମିଙ୍ଗିଲ ରୋହି ମାଗୁର ଶିଙ୍ଗୀ ବମୀ ବାଲିଗୁରୁଡି ମୀନମାଛ ଏରଣ୍ଡ ପଟୋଳ ସଜନାଛୁଇଁ ବାଇଗଣ ରସୁଣ ମଧୁରଡାଳିମ୍ବ ଓ ଅମ୍ଳଡାଳିମ୍ବ ପାଚିଲା ତାଳ ଆମ୍ବ ପଣସ ନିମ୍ବ ପରୁଷକ-ଫଳ ଜମ୍ଭୀର ବରକୋଳି ଦ୍ରାକ୍ଷା ନାରଙ୍ଗ ମହୁଲ ପସାରୁଣୀ ଗୋଖରୁ କାକୋଲୀ ପାଲଧୂଆ ଦୁଧ ପଇଡ଼ ଜଡ଼ାତେଲ ଗୋରୁମୂତ୍ର ନବାତ ତାମ୍ବୂଲ କାଞ୍ଜି ଭଲ୍ଲୁକୀ ସ୍ନିଗ୍ଧ ଓ ଉଷ୍ଣଭକ୍ଷଣ ଏବଂ ଲେପ ଅମାଶୟ-

ଗତ ବାତରେ ବମନ ପକ୍ୱାଶୟଗତ ବାତରେ ବିରେଚନ ଆଧ୍ମାନ ଓ ପ୍ରତ୍ୟାଧ୍ମାନ ବାତରେ ବର୍ତ୍ତି ପ୍ରୟୋଗ ଲଙ୍ଘନ ଅଗ୍ନି ଦୀପ୍ତିକର ଦ୍ରବ୍ୟ ଅଷ୍ଠୀଲାବାତରେ ଗୁଳ୍ମରୋଗର ପଥ୍ୟ ଦେବ ଶୁକ୍ର ଧାତୁଗତ ବାତରେ ଯକ୍ଷ୍ମାରୋଗର ପଥ୍ୟ ଦେବ ଚର୍ମ ମାଂସ ରକ୍ତ ଓ ଶିରାଗ୍ରସ୍ତ ବାତରେ ରକ୍ତ ମୋକ୍ଷଣ କରିବ ।

ଅପଥ୍ୟ । ଚିନ୍ତା ଉଦ୍‌ଗାର ମଳ ଓ ମୂତ୍ରାଦିର ବେଗଧାରଣ ବମନ ପରିଶ୍ରମ ଉପବାସ ରୂକ୍ଷ କଷାରସ ବାଲୁଙ୍ଗାଧାନ କାଙ୍ଗୁ ବିଆଳି ଧାନ୍ୟ କାଶଧାନ କୋଦୁଅ ଯୁଆଁ କୁଲ୍ମାଷ ପ୍ରଭୃତି ତୃଣଧାନ ବରଗୁଡ଼ି ମୁଗ ପୋଖରୀ ଓ ସରୋବର ଜଳ ଯବଧାନ ବାଂଶଗଜା ଜାମୁଫଳ କେଶର ଡାଳ ଗୁଆ ପଦ୍ମନାଡ଼ ଶିମ୍ବ ତାଳସଜ ପଦ୍ମାଦିର ମୂଳ କେନ୍ଦୁ କଲରା ଡାଳସଜ ମଟର ପତ୍ରଶାଗ ଉଦୁମ୍ବର ଶୀତଳଜଳ ଧାରୋଷ୍ଣଦୁଗ୍ଧ ବିରୁଦ୍ଧ-ଦ୍ରବ୍ୟ କ୍ଷାର ଶୁଖିଲାମାଛ ଏବଂ ମାଂସ ରକ୍ତମୋକ୍ଷଣ ମନ୍ଥ କଷାୟରସ କଟୁରସ ତିକ୍ତରସ ସ୍ତ୍ରୀସଙ୍ଗମ ହସ୍ତୀ ଓ ଅଶ୍ୱ ପ୍ରଭୃତି ଯାନରେ ଆରୋ-ହଣ ଭ୍ରମଣ ଖଟଶଯ୍ୟା ବିଶେଷରେ ଆଧ୍ମାନରୋଗୀ ଓ ଅର୍ଦ୍ଦିତ ରୋଗୀ-ପକ୍ଷରେ ସ୍ନାନ ଦୂଷିତଜଳ ଓ ଦନ୍ତଘର୍ଷଣ ନିଷେଧ ।

## ବାତରକ୍ତ-ପ୍ରକରଣ ।

ପଥ୍ୟ । ଉତ୍ତାନ ବାତରକ୍ତ ରୋଗରେ ଅଭ୍ୟଙ୍ଗ ପରିଷେକ ପ୍ରଲେପ ଗମ୍ଭୀର ବାତରକ୍ତ ରୋଗରେ ସ୍ନେହପାନ ଆସ୍ଥାପନ ବିରେଚନ ଉଭ-ୟପ୍ରକାର ବାତରକ୍ତ ରୋଗେ ସୂଚିରେ ବା ଜୋକରେ ବା ଶିଙ୍ଗା ବା ଲାଉରେ ରକ୍ତ ବାହାର କରିବା ଶତଧୌତ ଘୃତମର୍ଦ୍ଦନ ମେଣ୍ଢୀଦୁଗ୍ଧ ସେଚନ ଯବଧାନ ଷାଠିକାଧାନ କଳମଧାନ ରଙ୍ଗଶାଳୀଧାନ ଗହମ ବୁଟ ମୁଗ ହରଡ଼ ବଣମୁଗ ଛେଳିଦୁଧ ମଇଁଷିଦୁଧ ଗୋରୁଦୁଧ ଲାବ ତିତିର ମୟୂର କୁକୁଡ଼ା ଶୁଆ ଡାଉକ କାପତା ଘରଚଟିଆ ପ୍ରଭୃତିର

ମାଂସ ପୋଇଶାଗ ଲୁଣୁଲୁଣିଆ ବେଉକନା ସୁନୁସୁନିଆ ବଥୁଆ କଲରା ଲେଉଟିଆ ପସାରୁଣୀ ମଦରଙ୍ଗା ବୃତା ପାଣିକଖାରୁ ସୁନାସ୍ୱୀପତ୍ର ପଟୋଲ କଡ଼ାଢେଲ ଦ୍ରାକ୍ଷା ଶ୍ୱେତଚନ୍ଦନ ଶୁକ୍ଳନବାଳ ଲହୁଣୀ ସୋମଲତା କସ୍ତୁରୀ ଶିଶୁଗଛ ଅଗୁରୁ ଦେବଦାରୁ ସରଲକାଠ ତୈଳମର୍ଦ୍ଦନ ତକ୍ତଦ୍ରବ୍ୟ ॥

ଅପଥ୍ୟ ॥—ଦିବସନିଦ୍ରା ଅଗ୍ନି ଉତ୍ତାପ ପରିଶ୍ରମ କ୍ଷାର ସ୍ତ୍ରୀସଂସର୍ଗ ଖାର କୁଲଥ୍ଥ ଶିମ୍ବ କ୍ଷାରପଦାର୍ଥ ଉଦକମାଂସ ଆନୂପମାଂସ ବିରୁଦ୍ଧଦ୍ରବ୍ୟ ଦହି ଅଖୁ ମୂଳା ମଦ ବଷ୍ଟାଖସା ଅମ୍ଳଦ୍ରବ୍ୟ କାଞ୍ଜି କଟୁଦ୍ରବ୍ୟ ଗୁରୁଦ୍ରବ୍ୟ କଫକରଦ୍ରବ୍ୟ ଲବଣ ଛଦ୍ମ ।—

## ଉରୁସ୍ତମ୍ଭ-ପ୍ରକରଣ ।

ପଥ୍ୟ ॥—ସମସ୍ତରୁକ୍ଷକ୍ରିୟା ସ୍ୱେଦ ପୁରୁଣା କୋଦୁଅ ରଙ୍ଗଶାଳୀଧାନ ଯବଧାନ କୁଲଥ୍ଥ ଶୁଁଆ ବଣକୋଦୁଅ ସଜନାଛୁଇଁ କଲରା ପଟୋଲ ରସୁଣ ସୁନୁସୁନିଆ ଲୁଣୁଲୁଣିଆ ବେଉକନା ନିମ୍ବ ମଦରଙ୍ଗା ବଥୁଆ କରଡ଼ା ବାଇଁଗଣ ଗରମପାଣି ସୁନାସ୍ୱୀପତ୍ର ବଷ୍ଟାଖସା ତକ୍ର କାଞ୍ଜି ମହୁ କଟୁଦ୍ରବ୍ୟ କଷାଦ୍ରବ୍ୟ କ୍ଷାର ଗୋମୂତ୍ର ବଳାନୁସାରେ ପରିଶ୍ରମ ଶରୀରକର୍ଷଣ ନିର୍ମଳ ଜଳହ୍ରଦରେ ପହଁରିବାର ସ୍ରୋତନଦୀରେ ପହଁରିବାର କଫନାଶକଦ୍ରବ୍ୟ ବାତନାଶକଦ୍ରବ୍ୟ ॥—

ଅପଥ୍ୟ ॥—ଗୁରୁଦ୍ରବ୍ୟ ଶୀତଳଦ୍ରବ୍ୟ ଦ୍ରବଦ୍ରବ୍ୟ ସ୍ନିଗ୍ଧଦ୍ରବ୍ୟ ବିରୁଦ୍ଧଦ୍ରବ୍ୟ ଅତ୍ୟାର ଅହିତଦ୍ରବ୍ୟ ଭୋଜନ ବିରେଚନ ସ୍ନେହ ପ୍ରୟୋଗ ବମନ ରକ୍ତମୋକ୍ଷଣ ବସ୍ତିକ୍ରିୟା ॥—

## ଆମବାତ-ପ୍ରକରଣ ।

ପଥ୍ୟ ॥—ରୁକ୍ଷ ସ୍ୱେଦ ଲଙ୍ଘନ ତିକ୍ତସ୍ନେହପାନ ବସ୍ତିକ୍ରିୟା ପ୍ରଲେପ ବିରେଚନ ବର୍ତ୍ତିପ୍ରୟୋଗ ପୁରୁଣା ଶାଳୀଧାନ କୁଲଥ୍ଥ ପୁରୁଣାମଦ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସରସ ବାତନାଶକ ଓ କଫ-

ନାଗଙ୍କ କ୍ରିୟା ତକ୍ର ପୁରୁଣୀ ଜଡ଼ାତେଲ ରସୁଣ ପଟୋଲ ମଦରଙ୍ଗା କଲରା ବାଇଙ୍ଗଣ ସଜନାଛୁଇଁ ଗରମଜଳ ମନ୍ଦାର ଗୋଖରା ବୃଦ୍ଧଦାର ଭଲଅ ଗୋମୂତ୍ର ଅଦା କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ ଅଗ୍ନିଦୀପ୍ତିକରଦ୍ରବ୍ୟ

ଅପଥ୍ୟ ।—ଦହି ମାଛ ଗୁଡ଼ ଦୁଗ୍ଧ ପୋଇଶାଗ ବାଉପିଠା ଦୂଷିତଜଳ ପୂର୍ବଦିଗର ପବନ ବିରୁଦ୍ଧ ଭୋଜନ ଅସାତ୍ମ୍ୟ ଭୋଜନ ମଳ ଓ ମୂତ୍ରାଦିର ବେଗଧାରଣ ଉଦ୍ବାଗର ବିଷମ ଭୋଜନ ।

## ଶୂଳ-ପ୍ରକରଣ ।

ପଥ୍ୟ ।—ବମନ ସ୍ୱେଦ ଉପବାସ ବର୍ତ୍ତି ପ୍ରୟୋଗ ବସ୍ତିକ୍ରିୟା ନିଦ୍ରା ବିରେଚନ ପାଚକ ଦ୍ରବ୍ୟ ପୁରୁଣାଶାଳୀଧାନ ଯବଧାନରମଣ୍ଡ ଗରମଦୁଧ ଜାଙ୍ଗଲଜ ଜନ୍ତୁର ମାଂସରସ ପଟୋଲ ସଜନାଛୁଇ କଲରା ବାଇଙ୍ଗଣ ପାଚିଲାଆମ୍ବ ଦ୍ରାକ୍ଷା କଇଥ ଟେଭ୍ର ପିଅଳଫଳ ମଦରଙ୍ଗା ବଥୁଆ ସମୁଦ୍ର-ଲବଣ ସଚଲ ଲବଣ ହିଙ୍ଗୁ ଶୁଣ୍ଠୀ ବିଟଲବଣ ଛତାଉଷି ରସୁଣ ଲବଙ୍ଗ ଜଡ଼ାତେଲ ଗୋମୂତ୍ର ଗରମଜଳ ଜମ୍ବୀର ଲୁଡ଼ ଲଘୁଦ୍ରବ୍ୟ କ୍ଷାର ।—

ଅପଥ୍ୟ ।—ବିରୁଦ୍ଧଅନ୍ନ ଓ ପାନୀୟ ଉଦ୍ବାଗର ବିଷମ ଭୋଜନ ରୁକ୍ଷଦ୍ରବ୍ୟ ତିକ୍ତଦ୍ରବ୍ୟ କଷାଦ୍ରବ୍ୟ ଶୀତଳଦ୍ରବ୍ୟ ଗୁରୁଦ୍ରବ୍ୟ ବ୍ୟାୟାମ ସ୍ତ୍ରୀସଙ୍ଗମ ମଦ ମୁଗ ଓ ମସୂରାଦି ଲୁଣ୍ଡା ଖସା ମଳ ଓ ମୂତ୍ରର ବେଗ ଧାରଣ ଶୋକ କ୍ରୋଧ ।

## ଉଦାବର୍ତ୍ତ-ପ୍ରକରଣ ।

ପଥ୍ୟ ।—ସ୍ନିଗ୍ଧ ସ୍ୱେଦ ବିରେଚନ ବସ୍ତିକର୍ମ ଫଳବର୍ତ୍ତି ତେଲାଦି ମର୍ଦ୍ଦନ ଯବଧାନ ମଳମୂତ୍ର ଓ ବାୟୁନିଃସାରଣ ଗ୍ରାମ୍ୟ ମାଂସରଯୂଷ ଉଦକ ମାଂସର ଯୂଷ ଜଡ଼ାତେଲ କଇଁସିକାଲୁଡ଼ି କସିମୂଳା ସୁନାଖି ତନ୍ତୁଡ଼ୀ ଖସା ସିଝୁପତ୍ର ଶୁଣ୍ଠୀ ଟେଭ୍ର ଯବଖାର ହରଡ଼ା ଲବଙ୍ଗ ହିଙ୍ଗୁ ଦ୍ରାକ୍ଷା ଗୋମୂତ୍ର ସୈନ୍ଧବ । ଅଧୋବାତ ନିଗ୍ରହ ଉଦାବର୍ତ୍ତରେ ସ୍ନେହପ୍ରୟୋଗ ସ୍ୱେଦ

ବର୍ତ୍ତି ବସ୍ତିକ୍ରିୟା ଏବଂ ବାୟୁନାଶକ ଅନ୍ନପାନୀୟ । ମଳବେଗଧାରଣ ଉଦାବର୍ତ୍ତରେ ବାତଜନ୍ୟ ଉଦାବର୍ତ୍ତର ଚିକିତ୍ସା କରିବ ଏ ପରି ବସ୍ତି କ୍ରିୟା ସ୍ୱେଦ ତୈଳାଭ୍ୟଙ୍ଗ ଅବଗାହନ ସ୍ନାନ ଫଳବର୍ତ୍ତି ମଳଭେଦକ ଅନ୍ନପାନୀୟ । ମୂତ୍ରବେଗ ଧାରଣ ଉଦାବର୍ତ୍ତରେ ବସ୍ତିକର୍ମ ସ୍ୱେଦ ତୈଳମର୍ଦ୍ଦନ ଅବଗାହନ ସ୍ନାନ ତଳପେଟରେ ଘୃତମର୍ଦ୍ଦନ । ଉଦ୍ଗାରବେଗଧାରଣ ଉଦାବର୍ତ୍ତରେ ହିକ୍କାରୋଗର କ୍ରିୟା କରିବ । କାଶବେଗରୋଧ ଉଦାବର୍ତ୍ତରେ କାଶରୋଗୋକ୍ତ କ୍ରିୟା କରିବ । ଛିଙ୍କବେଗରୋଧ ଉଦାବର୍ତ୍ତରେ ସ୍ୱେଦ ଧୂମପାନ ଆହାର କଲାପରେ ଘୃତପାନ ଛିଙ୍କଜନିତଜନସ୍ୟ ଗ୍ରୀବାର ଊର୍ଦ୍ଧ୍ୱଦେଶରେ ତୈଳମର୍ଦ୍ଦନ କରିବ । ତୃଷାବେଗଧାରଣଜନିତ ଉଦାବର୍ତ୍ତରେ ଶୀତଳଅନ୍ନ ଓ ପାନୀୟ ହିତକର । ଜୃମ୍ଭା ( ହାଇ ) ବେଗଧାରଣ ଉଦାବର୍ତ୍ତରେ ବାୟୁନାଶକ ଚିକିତ୍ସା କରିବ । ନିଦ୍ରାବେଗଧାରଣ ଉଦାବର୍ତ୍ତରେ ଦୁଗ୍ଧପାନ ନିଦ୍ରା ଓ ଅଙ୍ଗମର୍ଦ୍ଦନ କରିବ । କ୍ଷୁଧାବେଗରୋଧଜନିତ ଉଦାବର୍ତ୍ତରେ ଅଳ୍ପ ପ୍ରମାଣେ ସ୍ନିଗ୍ଧ ଉଷ୍ଣ ଓ ଲଘୁଦ୍ରବ୍ୟ ଭୋଜନ କରିବ । ଅଭିଶଯ୍ୟ ଆନନ୍ଦଜ ବା ଶୋକଜ ବା ଅଶ୍ରୁଜ ବେଗଧାରଣ ଉଦାବର୍ତ୍ତରେ ନେତ୍ରଜଳ ବିସର୍ଜ୍ଜନ ନିଦ୍ରା ମଦ୍ୟପାନ ଏପରି ପ୍ରିୟବାକ୍ୟରେ ଶାନ୍ତ କରିବ । ପରିଶ୍ରମ ଏବଂ ଶ୍ୱାସର ବେଗରୋଧ ଉଦାବର୍ତ୍ତରେ ବିଶ୍ରାମ ଓ ବାତନାଶକ କ୍ରିୟା ହିତକର । ଶୁକ୍ରବେଗଧାରଣ ଉଦାବର୍ତ୍ତରେ ବସ୍ତିକ୍ରିୟା ଅଭ୍ୟଙ୍ଗ ଅବଗାହନ ସ୍ନାନ କୁକୁଡ଼ାମାଂସ ଶାଳୀଧାନ ମଦ ଦୁଧ ଯୌବନ ମଦମତ୍ତା କାମିନୀ ସହିତରେ ସଙ୍ଗମ । ବମିବେଗଧାରଣ ଉଦାବର୍ତ୍ତେ ଉପବାସ ଧୂମପାନ ଭୋଜନ ପରେ ବମନ ପରିଶ୍ରମ ରୁକ୍ଷ ଅନ୍ନ ଓ ପାନୀୟ ବିରେଚନ ରକ୍ତମୋକ୍ଷଣ ।

ଅପଥ୍ୟ ।— ବମନ ମଳମୂତ୍ରର ବେଗରୋଧ ଶମୀଧାନ କୋହୁଅ

ଲକତାଶାଗ ପଦ୍ମାଦର ମୂଳ ଜାମ୍ବୂଫଳ କାକୁଡ଼ୀ ବଟାଖସା ସମସ୍ତଅଙ୍କୁ ବାଂଶଗଜା ପିଷ୍ଟକାଦ ବିଷ୍ଟମ୍ଭୀଦ୍ରବ୍ୟ ବିରୁଦ୍ଧଦ୍ରବ୍ୟ କଷାଦ୍ରବ୍ୟ ଗୁରୁଦ୍ରବ୍ୟ । ଅନାହ ରୋଗରେ ଉଦାବର୍ତ୍ତରୋଗର ଯେଉଁଯେ ପଥ୍ୟ ବିଧି ତାହା କରିବ ।

ଗୁଲ୍ମ-ପ୍ରକରଣ ।

ପଥ୍ୟ ।— ସ୍ନେହ ସ୍ୱେଦ ବିରେଚନ ବସ୍ତିପ୍ରୟୋଗ ଦୁଇ ବାହୁର ଶିରାରେ ଦାଗ ଲଙ୍ଘନ ବର୍ତ୍ତିପ୍ରୟୋଗ ତୈଳାଭ୍ୟଙ୍ଗ ସ୍ନେହପ୍ରୟୋଗ ଅପକ୍ୱ ଅବସ୍ଥାରେ ଘୃତମର୍ଦ୍ଦନ ପାଚିଲେ ଛେଦନ ପୁରୁଣାଚାଉଳ ଶାଲୀଧାନ କୁଲଥିରଯୂଷ ଧନୂଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସରସ ମଦ ଗୋଦୁଗ୍ଧ ଛେଳୀଦୁଧ ଦ୍ରାକ୍ଷା ପରୁଷଫଳ ଖଜୂରୀ ଡାଳିମ୍ବ ଅଁଳା ନାରଙ୍ଗ ଅମ୍ଳବେତସ ତକ୍ର ଗବଘେଲ ରସୁଣ କସିମୂଳା ମଦରଙ୍ଗାଶାଗ ବଥୂଆଶାଗ ସଜନାକୁଁଢ଼ି ଯବକ୍ଷାର ହରଡ଼ା ହିଙ୍ଗୁ ଚେଭି ତ୍ରିକଟୁ ଗୋଲୁମୂତ୍ର ସ୍ନିଗ୍ଧଦ୍ରବ୍ୟ ଉଷ୍ଣଦ୍ରବ୍ୟ ପୁଷ୍ଟିକରଦ୍ରବ୍ୟ ଅଗ୍ନିତେଜକର ଦ୍ରବ୍ୟ ବାତନାଶକ ଦ୍ରବ୍ୟ ।

ଅପଥ୍ୟ ।— ବାୟୁବର୍ଦ୍ଧକଦ୍ରବ୍ୟ ବିରୁଦ୍ଧଭୋଜନ ଶୁଖିଲାମାଂସ ମୂଳା ମାଛ ମଧୂରରସଯୁକ୍ତଫଳ କଫକରପଦାର୍ଥ ଶୁଖିଲାଶାଗ ଶମୀଧାନ ବିଷ୍ଟମ୍ଭୀଦ୍ରବ୍ୟ ଗୁରୁଦ୍ରବ୍ୟ ଅଧୋଗତ ବାତବେଗ ମଳମୂତ୍ର ବେଗଧାରଣ ଶ୍ରମଜନିତ ଶ୍ୱାସବେଗ ଓ ଅଶ୍ରୁବେଗଧାରଣ ବମନ ଜଳପାନ ।

ହୃଦ୍ରୋଗ-ପ୍ରକରଣ ।

ପଥ୍ୟ ।—ସ୍ୱେଦ ବିରେଚନ ବମନ ଉପବାସ ବସ୍ତିକର୍ମ ବିଲେପୀ ପୁରୁଣାରଙ୍ଗ ଶାଲୀଧାନ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସୟୂଷ । ମୁଗ କୁଲଥି ରାଗ ଖଡଯୂଷ କାମ୍ବଳିକ ଷାଡ଼ବ କରମଙ୍ଗା ପଟୋଳ କଦଳୀ ପୁରୁଣା ପାଣିକଖାରୁ ପଣସ ଡାଳିମ୍ବ ସୁନାଝି କସିମୂ-

ଲା ଜଙ୍ଗଲମାଲପା ବରଷାପାଣି ସୈନ୍ଧବ ଦ୍ରାକ୍ଷା ଭଙ୍ଗ ପୁରୁଣାଗୁଡ଼ ଶୁଣ୍ଠୀ ଯୁଆଣୀ ରସୁଣ ହରଡ଼ା କୁଡ଼ ଧନିଆ ମରିଚ ଅଦା ସୌବୀର ଶୁକ୍ତ ମଦ୍ଯ ବାରୁଣୀମଦ କସ୍ତୂରୀ ରକ୍ତଚନ୍ଦନ ପାନୀୟଦ୍ରବ୍ୟ ତାମ୍ବୂଲ ।

ଅପଥ୍ୟ ।—ତୃଷା ବମନ ମୂତ୍ର ଅଧୋବାୟୁ ଶୁକ୍ର କାଶ ଉଦ୍ଗାର ଶ୍ରମଜ-ଶ୍ୱାସ ମଳ ଅଶ୍ରୁ ଏ ମାନଙ୍କ ବେଗଧାରଣ ସହ୍ୟଗିରି ଓ ବିନ୍ଧ୍ୟଗିରିଜାତ ନଦୀଜଳ ମେଣ୍ଢୀଦୁଧ ଦୂଷିତଜଳ କଷାରସ ବିରୁଦ୍ଧଦ୍ରବ୍ୟ ଉଷ୍ଣଦ୍ରବ୍ୟ ଗୁରୁଦ୍ରବ୍ୟ ତିକ୍ତଦ୍ରବ୍ୟ ଅମ୍ଳଦ୍ରବ୍ୟ ପୁରୁଣାପତ୍ରଶାଗ ଯବକ୍ଷାର ମନ୍ଥଳ ଦନ୍ତକାଷ୍ଠ ରକ୍ତମୋକ୍ଷଣ ।

## ମୂତ୍ରକୃଚ୍ଛ୍ର-ପ୍ରକରଣ ।

ପଥ୍ୟ ।—ବାତଜନିତ ମୂତ୍ରକୃଚ୍ଛ୍ରରେ ଅବଗାହନ ଅଭ୍ୟଙ୍ଗ ନିରୂହ ବସ୍ତିକ୍ରିୟା ସ୍ନେହକ୍ରିୟା ସ୍ନେହପ୍ରୟୋଗ ଉତ୍ତରବସ୍ତି ପରିସେଚନ । ପିତ୍ତୋଦ୍ଭବ ମୂତ୍ରକୃଚ୍ଛ୍ରେ ଅବଗାହନ ଶୀତଳପ୍ରଲେପ ଶ୍ଳୈଷ୍ମିକବର୍ଦ୍ଧ ବସ୍ତିକ୍ରିୟା ବିରେଚନ । କଫଜନିତ ମୂତ୍ରକୃଚ୍ଛ୍ରେ ସ୍ୱେଦ ବିରେଚନ ବମନ ଯବକ୍ଷାର ଯବଗୁଡ଼ଜଳର ମଣ୍ଡ ତୀକ୍ଷ୍ଣଦ୍ରବ୍ୟ ଉଷ୍ଣଦ୍ରବ୍ୟ । ତ୍ରିଦୋଷଜ ମୂତ୍ରକୃଚ୍ଛ୍ରେ ଅଭ୍ୟଙ୍ଗ ଏବଂ ପୂର୍ବୋକ୍ତ ବାତଜ ପିତ୍ତଜ ଓ କଫଜ ମୂତ୍ରକୃଚ୍ଛ୍ରର ପଥ୍ୟ ଦେବ ଏପରି ପୁରୁଣା ରଙ୍ଗଶାଳୀ ଧାନ ଭଙ୍ଗ ଗୋଦୁଗ୍ଧ ବସାଦ ହି ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ଯୂଷ ମୁଗର ଯୂଷ ନବାତ ପୁରୁଣା ପାଣିକଖାରୁ ପଟୋଳ କପୂରା ଗୋଖର ଧିକୁଁଆ ଖଜୁରୀ ଗୁଆ ତାଳ ଏମାନଙ୍କ କଞ୍ଚା ହରଡ଼ା ତାଳଗଜା ଗୁଳୁଚି ଶୀତଳ ଅନ୍ନ ଓ ପାନୀୟ ଶିଶିରଜଳ କର୍ପୂର ।

ଅପଥ୍ୟ ।—ମଦ୍ୟ ପରିଶ୍ରମ ସ୍ତ୍ରୀସଙ୍ଗମ ହାତୀ ଓ ଘୋଡ଼ାରେ ଚଢ଼ିବାର ସମସ୍ତ ବିରୁଦ୍ଧ ଭୋଜନ ଭୋଜନ ଉପରେ ଭୋଜନ ତାମ୍ବୂଲ ମାଛ ଲବଣ ଅଦା ତେଲରେ ଭଜାଦ୍ରବ୍ୟ ଖସାହେବ ଠାଦ୍ରବ୍ୟ ହିଙ୍ଗୁ ଖସା

ଯୋଉଷ ମଳମୂତ୍ରର ବେଗଧାରଣ ଖାର ବାଂଶଗଜା ଅତଶଯ୍ୟ ତୀକ୍ଷ୍ଣଦ୍ରବ୍ୟ ବିଦାହିଦ୍ରବ୍ୟ ରୂକ୍ଷଦ୍ରବ୍ୟ ଅମ୍ଳରସଯୁକ୍ତଦ୍ରବ୍ୟ ॥

ମୂତ୍ରାଘାତ-ପ୍ରକରଣ ।

ପଥ୍ୟ ।—ଅଭ୍ୟଙ୍ଗ ସ୍ନେହପ୍ରୟୋଗ ବିରେଚନ ବସ୍ତିକ୍ରିୟା ସ୍ୱେଦ ଅବଗାହନ ଉତ୍ତରବସ୍ତି ପୁରୁଣା ରଙ୍ଗଶାଳୀଧାନ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ମଦ ତକ୍ର ଦୁଧ ବସାଦହି ଖାରଯୂଷ ପୁରୁଣାପାଣିକଖାରୁ ପଟୋଳ କପୂର୍ର ତାଳଗଜା ହରଡ଼ା ପଇଡ଼ ଗୁଆ ଖଜୂରୀ ତାଳ ଓ ନଡ଼ିଆ ଏ ଗଛମାନଙ୍କ କନା ।

ଅପଥ୍ୟ ।—ସମସ୍ତବିରୁଦ୍ଧଦ୍ରବ୍ୟ ପରିଶ୍ରମ ପଥଭ୍ରମଣ ରୂକ୍ଷଦ୍ରବ୍ୟ ବିଦାହି ଦ୍ରବ୍ୟ ବିଷ୍ଟମ୍ଭୀ ଦ୍ରବ୍ୟ ସ୍ତ୍ରୀସଙ୍ଗମ ମଳ ଓ ମୂତ୍ରର ବେଗଧାରଣ ବାଂଶଗଜା ବମନ ।—

ଅଶ୍ମରୀ-ପ୍ରକରଣ ।

ପଥ୍ୟ । ବସ୍ତିକ୍ରିୟା ବମନ ବିରେଚନ ଉପବାସ ସ୍ୱେଦ ଅବଗାହନ ଜଳସେଚନ ଯବଧାନ କୁଳଥ ବିରି ପୁରୁଣାଶାଳୀ ଧାନ ପୁରାତନ ମଦ ଧନ୍ୱଦେଶଜ ପକ୍ଷିମାନଙ୍କ ମାଂସ ପୁରୁଣା ପାଣିକଖାରୁ ଓ ଲଚ୍ଚା ଗୋଖରୀ ଜଳଜାତ ଶାଗ ଅଦା ପାଷାଣଭେଦ ଯବଖାର ବାଂଶଧାନ ଶାଳପର୍ଣ୍ଣୀ ଅଶ୍ମରୀକ କାଢ଼ିବାର ।

ଅପଥ୍ୟ । ମୂତ୍ର ଓ ଶୁକ୍ରର ବେଗଧାରଣ ଅମ୍ଳଦ୍ରବ୍ୟ ବିଷ୍ଟମ୍ଭୀ ଦ୍ରବ୍ୟ ରୂକ୍ଷଦ୍ରବ୍ୟ ଗୁରୁଅନ୍ନ ଓ ପାନୀୟ ବିରୁଦ୍ଧ ଭୋଜନ ।

ପ୍ରମେହ-ପ୍ରକରଣ ।

ପଥ୍ୟ । ଲଙ୍ଘନ ବମନ ବିରେଚନ ଉଦ୍ୱର୍ତ୍ତନ ଶମନଦ୍ରବ୍ୟ ଅଗ୍ନିଦୀପକ ଦ୍ରବ୍ୟ ତୃଣଧାନ୍ୟ କାଙ୍ଗୁ ଯବଧାନ ବାଂଶଧାନ କୋଦୁଅ ଶୁଆଁ ପୁରୁଣା ସରୁଧାନ ଷାଠିକାଧାନ ଗହମ ପୁରୁଣାଶାଳୀଧାନ ବାଲୁଙ୍ଗାଧାନ

କୁଲଥ୍ଥ ମୁଗ୍ ହରଡ଼ ଚଣା ଖସା ଖଇ ପୁରୁଣାମଦ ମନ୍ଥ ଯବମଣ୍ଡ ତକ୍ର ଗୋମୂତ୍ର ମହିଷମୂତ୍ର ଘରଚଟିଆ କାପ୍ତା ଠେକୁଆ ତିତ୍ତିର ଲାବ ମୟୂର ଭୃଙ୍ଗ ମିରଗ ବଗ ଶୁଆ ଏମାନଙ୍କ ମାଂସ ସଜନାଛୁଇଁ ପଟୋଳ କଲରା କାଙ୍କଡ ଡାଳ ଅକ୍ରାନ୍ତଫଳ ଉଡୁମ୍ବରଫଳ ରସୁଣ କସି କଦଳୀ ମଦର-ଙ୍ଗାଶାଗ ଗୋଖରା ମୂଷାକାନଶାଗ ମନ୍ଦାରପତ୍ର ଗୁଳୁଚ ତ୍ରିଫଳା କଇଥ ଜାମୁଫଳ ବଲକେଶର ପଦ୍ମାବରମୂଳ ଓ ଫଳ ଖଜୁରୀ ନଡଆ ତାଳ ଏ ଗଛମାନଙ୍କ କନ୍ଦା ତ୍ରିକଟୁ କେନ୍ଦୁଫଳ ଖଇର ପିତାକୋରୁଆ ସମସ୍ତ ତିକ୍ତ ପଦାର୍ଥ କଷାପଦାର୍ଥ ହାତ ଓ ଘୋଡ଼ାରେ ଆରୋହଣ ଖରା ବ୍ୟାୟାମ ।

ଅପଥ୍ୟ । ମୂତ୍ର ବେଗଧାରଣ ଧୂମପାନ ସ୍ୱେଦ ରକ୍ତମୋକ୍ଷଣ ସର୍ବଦା ବସିରହିବାର ଦିବସନିଦ୍ରା ନୂତନଧାନର ଅନ୍ନ ଦହି ଆନୂପଦେଶଜମୃଗ ଓ ପକ୍ଷିମାନଙ୍କ ମାଂସ ଶିମ୍ବ ପିଷ୍ଟାନ୍ନ ସ୍ତ୍ରୀସଙ୍ଗ ସୌବୀର ମଦ ଶୁକ୍ତ ତେଲ ଦୁଗ୍ଧ ଘୃତ ଗୁଡ ଲାଉ ତାଳସଜ ବରୁବ ଭୋଜନ ପାଣିକଖାରୁ ଆଖୁ ଦୂଷିତ ଜଳ ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣଦ୍ରବ୍ୟ ଅଭିଷ୍ୟନ୍ଦିଦ୍ରବ୍ୟ ।

ମେଦ-ପ୍ରକରଣ ।

ପଥ୍ୟ । ଚିନ୍ତା ପରିଶ୍ରମ ରାତ୍ରି ଉଜାଗରଣ ସ୍ତ୍ରୀସଙ୍ଗମ ଅତ୍ୟନ୍ତ ଶରୀର ମାର୍ଜନ ଲଙ୍ଘନ ଖରା ହାତ ଓ ଘୋଡ଼ାରେ ଗମନ ପଥ ଭ୍ରମଣ ବିରେଚ-ନ ବମନ ଅପତର୍ପଣ ପୁରୁଣା ବାଂଶଧାନ କୋଦୁଅ ଶୁଂଆ ଉଡୀଧାନ କାଙ୍ଗୁ ଯବଧାନ ପୁରୁଣାକୁଲଥ୍ଥ ଚଣା ମସୁର ମୁଗ ହରଡ ମନ୍ଥ ଖଇ କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ କଷାଦ୍ରବ୍ୟ ତକ୍ର ମଦ ଚିଙ୍ଗୁଡିମାଛ ପୋଡାବାଇଁ-ଗଣ ତ୍ରିଫଳା ଗୁଗୁଲୁ ଅଗୁରୁ ତ୍ରିକଟୁ ଷୋଡ଼ଷମାଲପା ଅଳାଇଚ ରୂକ୍ଷ-ପଦାର୍ଥ କଟୁତେଲ ପ୍ରଭୃତ ଶାଗ ଚନ୍ଦନ ଲେପନ ଗରମପାଣି ଶଳୀଜଭୁ ଭୋଜନ ପୂର୍ବରୁ ଜଳପାନ ॥ —

ଅପଥ୍ୟ ।।୦।। ସ୍ନାନ ରସାୟନକ୍ରିୟା ଶାଳୀଧାନ ଗହମ ସୁଖଶୀଲତା ଛେନା ନବାଉ କ୍ଷୀର ଘୃତାଦି ପୁଷ୍ଟିକର ପଦାର୍ଥ ମାଛମାଂସ ମାଲ୍ୟଧାରଣ ସୁଗନ୍ଧଦ୍ରବ୍ୟ ସେବନ ମଧୁର ରସଯୁକ୍ତ ପଦାର୍ଥ ଭକ୍ଷଣ ଭୋଜନ ପରେ ଜଳପାନ ଅତ୍ୟନ୍ତ ସ୍ଥୂଳ ବ୍ୟକ୍ତିପକ୍ଷେ ବମନ ।।

କୃଶ-ପ୍ରକରଣ ।

ପଥ୍ୟ । ମେଦରୋଗରେ ଯେ ଅପଥ୍ୟ କୃଶରୋଗରେ ସେ ପଥ୍ୟ ।।

ଉଦର-ପ୍ରକରଣ ।

ପଥ୍ୟ । ବିରେଚନ ଉପବାସ ପୁରୁଣାକୁଳଥ୍ୱ ମୁଗ ରଙ୍ଗଶାଳୀଧାନ ଯବଧାନ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ପେୟା ମଦ ମନ୍ଥ ଶୀଧୁ ମଧୁ ସଂସ୍କୃତମଦ ତକ୍ର ରସୁଣ କଡାତେଲ ଅଦା ମଦରଙ୍ଗାଶାଗ ପଟୋଲଲଠା କଲରା ପୁରୁଣୀ ସଜନାଛୁଇଁ ହରଡ଼ା ତାମ୍ବୂଳ ଅଲାଇଚ ଯବକ୍ଷାର ଲୋହ ଛେଳିଦୁଧ ଗୋଦୁଗ୍ଧ ଓଟଦୁଧ ମଇଁଷିଦୁଧ ଓ ଏମାନଙ୍କ ମୂତ୍ର ଲଘୁଦ୍ରବ୍ୟ ତିକ୍ତଦ୍ରବ୍ୟ ଅଗ୍ନିଦୀପକ ଦ୍ରବ୍ୟ ସର୍ବଦା ଦେହରେ ଲୁଗା ଘୋଡହେବାର ଅଗ୍ନିକର୍ମ ରୋଗର ଅବସ୍ଥାନୁସାରେ ବିଷ ପ୍ରୟୋଗ । ବିଶେଷରେ ପ୍ଲୀହୋଦରରେ ବାମପାଖ ବାହୁର ସନ୍ଧିର ଅଭ୍ୟନ୍ତର ଶିରା ବିଦ୍ଧ କରିବ ବଦ୍ଧୋଦରରେ ଉଦକୋଦରରେ ଓ କ୍ଷତୋଦରରେ ନାଭିର ତଳଭାଗରେ ବିଧିଅନୁସାରେ ଶସ୍ତ୍ର ପ୍ରୟୋଗ କରିବ ବାତୋଦରରେ ପ୍ରଥମେ ଘୃତପାନ ଅଭ୍ୟଙ୍ଗ ଅନୁବାସନ-କ୍ରିୟା ।

ଅପଥ୍ୟ । ସ୍ନେହପାନ ଧୂମପାନ ଜଳପାନ ଶିରାବେଧ ବମନ ହସ୍ତ୍ୟାଦି ଯାନଆରୋହଣ ଦିବସନିଦ୍ରା ବ୍ୟାୟାମ ପିଠା ଉଦକମାଂସ ଆନୂପମାଂସ ପତ୍ରଶାଗ ଖସା ଉଷ୍ଣଦ୍ରବ୍ୟ ବିଦାହିଦ୍ରବ୍ୟ ଲବଣ କ୍ଷାରପ୍ରଭୃତି ବିରୁଦ୍ଧ ଭୋଜନ ଦୂଷିତଜଳ ଗୁରୁଦ୍ରବ୍ୟ ମହେନ୍ଦ୍ରପର୍ବତଜାତ ନଦୀର ଜଳ ବିଷ୍ଟମ୍ଭୀଦ୍ରବ୍ୟ ବିଶେଷରେ ଛେଦୋଦରରେ ସ୍ୱେଦ ।

## ଶୋଥ-ପ୍ରକରଣ ।

ପଥ୍ୟ । ସଂଶୋଧନ ଔଷଧ ଉପବାସ ରକ୍ତମୋକ୍ଷଣ ସ୍ୱେଦ ଲେପ ପରଷେଚନ ପୁରୁଣା ରକ୍ତଶାଳୀଧାନ ଯବଧାନ କୁଳଥ୍ଥ ମୁଗ ଗୋଧି ଶଜାରୁ ମୟୂର ତିତ୍ତିର କୁକ୍କୁଡ଼ା ଲାବ ପ୍ରଭୃତି ଜାଙ୍ଗଲ ଓ ବିଷ୍କିରମାଂସ କଇଁଛ କକଡ଼ାଶୃଙ୍ଗୀ ପୁରୁଣାଘିଅ ତକ୍ର ମଦ ମହୁ ଦୋରକାମଦ ଶିମ୍ବ କଲରା ରକ୍ତସଜନା ପଣସ ଆମ୍ବ କାଙ୍କଡ ମାଣସାରୁ ଅଡୋଷି ଗାଜର ପଟୋଳ ବେତକନ୍ଦା ବାଇଁଗଣ ମୂଳା ପୁରୁଣୀ ଶତାମୂଳ ପାଳଧୂଆ ଅଗିବଥୁ ନିମ୍ବ କୋଚିଲାପତ୍ର ଜଡାତେଲ କଟୁକୀ ହଳଦୀ ହରଡ଼ା କ୍ଷାରଦ୍ରବ୍ୟ ଭାଲିଆ ଗୁଗୁଳୁ ଅଗୁରୁ କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ ଅଗ୍ନିତେଜକର ଦ୍ରବ୍ୟ ଗୋରୁମୂତ ଛେଳିମୂତ ମଇଁଷିମୂତ କସ୍ତୁରୀ ଶିଳାଜତୁ ପାଣ୍ଡୁରୋଗରେ ଯେ ଦାଗ ଦେବା ଅଗ୍ନିକର୍ମ ବିଧି ଅଛି ତାହା ଶୋଥରୋଗଠାରେ ପ୍ରୟୋଗ କରିବ ।

ଅପଥ୍ୟ । ସର୍ବଦା ଦୂଷିତବାୟୁ ସେବନ ଦୂଷିତଜଳ ପାନ ମଳମୂତ୍ରାଦିର ବେଗଧାରଣ ସମସ୍ତ ବିରୁଦ୍ଧକାର୍ଯ୍ୟ ବିଷମ ଭୋଜନ ବିଷମପାନ ମାଟିଭକ୍ଷଣ ଗ୍ରାମ୍ୟମାଂସ ଉଦକମାଂସ ଆନୂପମାଂସ ଲବଣ ଶୁଖିଲାଶାଗ ନୂତନ ଧାନ ଗୁଡ଼ପ୍ରଭୃତି ଗୁଡ଼ିଲଛତୁଆ ଯେ ସାମିଗ୍ରିରେ ପ୍ରସ୍ତୁତ ହୁଏ ସେ ସମସ୍ତ ଦଧି କୃଶରା ବିଜଳମଦ ଅମ୍ଳଦ୍ରବ୍ୟ ଭଜା ଯବଧାନ ଶୁଖିଲା ମାଂସ ସଶମନ ଗୁରୁଦ୍ରବ୍ୟ ଭୋଜନ ବିଦାହିଦ୍ରବ୍ୟ ଦିବସନିଦ୍ରା ।

## ଅଣ୍ଡବୃଦ୍ଧି ଓ ବୃଦ୍ଧି-ପ୍ରକରଣ ।

ପଥ୍ୟ । ସଂଶୋଧନ ଔଷଧ ବସ୍ତିକ୍ରିୟା ରକ୍ତମୋକ୍ଷଣ ସ୍ୱେଦ ଲେପ ରକ୍ତଶାଳୀଧାନ ଜଡାତେଲ ଗୋରୁମୂତ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କମାଂସ ସଜନାଛୁଇଁ ପଟୋଳ ପୁରୁଣୀ ଗୋଖରା ଅଗିବଥୁ ତାମ୍ବୂଳ ହରଡ଼ା ସରଳକାଠ ରସୁଣ ବାଇଁଗଣ ଗାଜର ମହୁ ପୁରୁଣାଘିଅ ଗରମପାଣି

ଉକ୍ତ ଆମବାତରୋଗରେ ଯେ ପଥ୍ୟ ଅଛି ସେ ସମସ୍ତ ଅଗ୍ନି ବର୍ଦ୍ଧକ ଅନ୍ନ ଓ ପାନାଦି ପୁରୁଣାମଦ ଦୁଇଖୋଲ ବାଗିସ୍ଥାନରେ ଅର୍ଦ୍ଧଚନ୍ଦ୍ରାକୃତରେ ତପ୍ତ ଲୌହରେ ଦାଗିବ ।—ବାମପାଖର କୋଷ ବଢ଼ିଲେ ଦକ୍ଷିଣପାଖ ଓ ଦକ୍ଷିଣପାଖ ବଢ଼ିଲେ ବାମପାଖ ବାହୁର ଶିରରେ ଚଢାମୂଳ ବାଟି ଡୋରରେ ବୋଳ ବାନ୍ଧିଲେ ଶିରବଦ୍ଧ ହେବ ଏପର ଶସ୍ତ୍ରକ୍ରିୟା ।

ଅପଥ୍ୟ । ବରିଷ୍ଟପାନ ବରିଷ୍ଟଅନ୍ନ ଅସାତ୍ମ୍ୟ ସେବା ସଙ୍କୋଭ ହସ୍ତି ଓ ଅଶ୍ୱାଦରେ ଆରୋହଣ ଅନୂପମାଂସ ଦହି କ୍ଷୀର ଦୁଧ ଦିବାସ୍ନାନ ପୁଇଶାଗ ଗୁରୁଦ୍ରବ୍ୟ ଶୁକ୍ରବେଗଧାରଣ ॥

ଗଲଗଣ୍ଡ ଗଣ୍ଡମାଳା ୧ ପଚୀ ଗ୍ରନ୍ଥ୍ୟର୍ବୁଦପ୍ରକରଣ ।

ପଥ୍ୟ । ବମନ ବରେଚନ ନସ୍ୟ ସ୍ୱେଦ ଧୂମପାନ ଶିରାବେଧ ଅଗ୍ନି-କର୍ମ କ୍ଷାରପ୍ରୟୋଗ ଲେପ ଲଙ୍ଘନ ପୁରୁଣାଘୃତପାନ ପୁରୁଣା ରଙ୍ଗଶାଳୀ ଧାନ ଯବଧାନ ପଟୋଲ ରଙ୍ଗସଜନାଛୁଇଁ କଲରା ମଦରଙ୍ଗାଶାଗ ବେତ-କନ୍ଦା ରୁକ୍ଷପଦାର୍ଥ କଟୁପଦାର୍ଥ ଅଗ୍ନିକରପଦାର୍ଥ ଗୁଗୁଳୁ ଶିଳାଜତୁ । ଗଲଗ-ଣ୍ଡରୋଗରେ ଜଭରତଳ ଶିରା ଛେଦନ ଅଥବା ମଣିବନ୍ଧର ଏକଅଙ୍ଗୁଳି ଅନ୍ତରରେ ଅର୍ଦ୍ଧଚନ୍ଦ୍ରପର ଉକୋଟିରେଖା ପ୍ରାୟ ତାତଲାଲୁହାରେ ଦାଗଦେବ ॥

ଅପଥ୍ୟ ।—ସମସ୍ତଛଣ୍ଡାଦୁଧ ଛେନା ଗୁଡ଼ପିଠା ଅନୂପଦେଶଜ-ମାଂସ ପିଠା ଅମ୍ଳଦ୍ରବ୍ୟ ମଧୁରଦ୍ରବ୍ୟ ଗୁରୁଦ୍ରବ୍ୟ ଅଭିଷ୍ୟନ୍ଦିଦ୍ରବ୍ୟ ॥

ଶ୍ଳୀପଦ-ପ୍ରକରଣ ।

ପଥ୍ୟ । ବମନ ଉପବାସ ରକ୍ତମୋକ୍ଷଣ ସ୍ୱେଦ ବରେଚନ ଲେପ ପୁରୁଣାଶାଳୀ ଓ ଷାଠିକାଧାନ ଯବଧାନ କୁଲଥ୍ ରସୁଣ ପଟୋଲ ବାଇଁ-ଗଣ ସଜନାଛୁଇଁ କଲରା ପୁରୁଣୀ ମୂଳା କରଞ୍ଜ ଜଡାତେଲ ଗୋମୂତ୍ର କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ ଅଗ୍ନି ତେଜକରଦ୍ରବ୍ୟ ବାତଜ ଶ୍ଳୀପଦରେ ଗୁଳ୍ଫର

ବୃଦ୍ଧଅଙ୍ଗୁଳି ଉପରେ ପିତ୍ତଜରେ ଗୁଳ୍ଫଉପରେ କଫଜରେ ଗୋଡର ବୁଢାଅଙ୍ଗୁଳିର ମୂଳଦେଶରେ ଶିରା ବନ୍ଧ କରିବ ॥

ଅପଥ୍ୟ । ପିଷ୍ଟକାଦି ଦୁଧ ଛଣ୍ଡାଛେନା ଗୁଡ଼ ଅନୂପମାଂସ ମଧୁରଦ୍ରବ୍ୟ ପାରପାଡ଼ିପରିବା ଓ ବନ୍ଧ୍ୟ ଗିରଜାତ ନଦୀଜଳ ପିଚ୍ଛଳଦ୍ରବ୍ୟ ଗୁରୁଦ୍ରବ୍ୟ ଅଭିଷ୍ୟନ୍ଦିଦ୍ରବ୍ୟ ॥

ବିଦ୍ରଧିପ୍ରକରଣ ।

ପଥ୍ୟ । ବିଦ୍ରଧିର ଅପକ୍ୱଅବସ୍ଥାରେ ବରେଚନ ଲେପ ସ୍ୱେଦ ରକ୍ତମୋକ୍ଷଣ ପୁରୁଣାଶୁଂଅ ବାଲୁଙ୍ଗାଧାନ କୁଳଥି ରସୁଣ ରଙ୍ଗସଜନାକୁଁ ଇ ଶିମ୍ବ କଲରା ପୁରୁଣୀ ଗମ୍ଭାରୀ ଶତାମୂଳ ମହୁ ଏପରି ଶୋଥରୋଗୋକ୍ତ ସମସ୍ତ ପଥ୍ୟଦ୍ରବ୍ୟ ପକ୍ୱବିଦ୍ରଧି ରୋଗିର ପଥ୍ୟ ଅଟେ । ବିଦ୍ରଧିପକ୍ୱ ଅବସ୍ଥାରେ ଶସ୍ତ୍ରକାର୍ଯ୍ୟ ପୁରୁଣା ରଙ୍ଗଶାଳୀଧାନ ଘିଅ ତେଲ ମୁଗଯୂଷ କଲେପୀ ଧନ୍ୱଦେଶଜ ମୃଗାଦି ମାଂସରସ ମଦରଙ୍ଗାଶାଗ କଦଳୀ ପଟୋଳ କର୍ପୂର ରକ୍ତଚନ୍ଦନ ଗରମ ଜଳ ଶୀତଳଜଳ ବ୍ରଣରୋଗୋକ୍ତ ସମସ୍ତ ପଥ୍ୟଦ୍ରବ୍ୟ ପକ୍ୱବିଦ୍ରଧିରେ ଉପକାରକ ॥

ଅପଥ୍ୟ । ଶୋଥରୋଗ ଓ ବ୍ରଣରୋଗରେ ଯେ ଯେ ଅପଥ୍ୟ ସେହି ସମସ୍ତ ଅପଥ୍ୟ ।

ବ୍ରଣଶୋଥ ସଦ୍ୟୋବ୍ରଣ ନାଡ଼ୀବ୍ରଣପ୍ରକରଣ ।

ପଥ୍ୟ । ଜଳରେ ଧୋଇବାର ରକ୍ତମୋକ୍ଷଣ ଲେପ ଛେଦନ ବ୍ରଣଶୋଧନ ବ୍ରଣଉଠିବା ଔଷଧ ପୁରୁଣା ଶୁକ୍ଳଶାଳଧାନ ଯବଧାନ ଷାଠିକାଧାନ ଗହମ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ କଲେପୀ ଲାଜମଣ୍ଡ କଟୁତେଲ ଘିଅ ମହୁ ଖସାମାଲପା ମସୁର ହରଡ ମୁଗଯୂଷ କବାଟ ଅଷାଢୁଅଫଳ ବାଇଗଣ କାଙ୍କଡ଼ ପଟୋଳ କଲରା ନିମ୍ବପତ୍ର ବେତକନା କସିମୂଳା ସୁନୁସୁନିଆଶାଗ ମଦ୍‌ରଙ୍ଗା ଲେଉଟିଆ ବଥୁଆଶାଗ

ତ୍ରିଫଳା ପଣସ ମୋଚରସ ଡାଳମ୍ବ କଣ୍ଟକାରୀଫଳ ଜୀବନ୍ତୀ ସୈନ୍ଧବ ଦ୍ରାକ୍ଷା ସ୍ୱାଦୁ ତକ୍ତ ଓକଷାରସ ଯୁକ୍ତ ଦ୍ରବ୍ୟ ସ୍ନିଗ୍ଧ ଉଷ୍ଣ ଯାଉଁଅନ୍ନ ଦ୍ରୁଷଣ ଶମନଔଷଧ ବ୍ରଣସ୍ଥାନଦଗ୍ଧ ସ୍ୱେଦ ବ୍ରଣସ୍ଥାନ ବନ୍ଧନକରିବ ଯେପରି ପବନ ନ ପଶେ ବ୍ରଣକୁ ଅଳ୍ପ ଚପି ପୂଜ ବାହାରକରିବ ଲେପ ଧୂପ ପତ୍ରଲଗାଇବାର ବେଣାଚେର ଚଅଁରରେ ବିଞ୍ଚିବାର ରକ୍ତଚନ୍ଦନ ବଣ୍ଟାଖସାଲେପ ଉଷ୍ଣ ଓ ଶୀତଳଜଳ କର୍ପୂର ବ୍ରଣବଢିବା କ୍ରିୟା କଲାପର ଦାଗ ବା ଛେଦନ ।

ଅପଥ୍ୟ । ନୂତନଧାନ ଖେସା ଶିମ୍ବ ଖାର କୁଳଥ୍ୟ ଖେଚଡ଼ି ଶୀତଳଜଳ ଚେଟନା ଗୁଡ଼ ମଦ ପତ୍ରଶାଗ ଜାଙ୍ଗଲଜମାଂସ ଘିଅ ଅନ୍ୟ ସମସ୍ତମାଂସ ଅସାତ୍ମ୍ୟ ଭୋଜନ ବିଦାହିଦ୍ରବ୍ୟ ବିଷ୍ଟମ୍ଭିଦ୍ରବ୍ୟ ଗୁରୁଦ୍ରବ୍ୟ କଟୁଦ୍ରବ୍ୟ ଅମ୍ଳଦ୍ରବ୍ୟ ଶୀତଳଦ୍ରବ୍ୟ ଲବଣ ରସଯୁକ୍ତ ଦ୍ରବ୍ୟ ସ୍ତ୍ରୀ ସଙ୍ଗମ ବ୍ୟାୟାମ ଉଚ୍ଚସ୍ୱରରେ ବାକ୍ୟକଥନ ସ୍ତ୍ରୀ ସହିତରେ ଆଳାପ ଦିବସନିଦ୍ରା ରାତ୍ରଜାଗରଣ ଅଧିକଶଯ୍ୟା ପଥଭ୍ରମଣ ସର୍ବଦା ବସିରହିବାର ସଂଶୋଧନ ଔଷଧ ପ୍ରୟୋଗ ନ କରି ପୂର୍ବେ ରୋପଣ ଔଷଧଦାନ ନସ୍ୟ ତାମ୍ବୂଲ ଅପକ୍ୱ ବ୍ରଣରେ ଏ ସମସ୍ତ ଅପଥ୍ୟ ଏପରି ପ୍ରବଳ ପବନ ଖରା ଧୂଆଁ ବୃଷ୍ଟିଜଳ ଧୂଳି ଭସ୍ମ କ୍ରୋଧ ବମନ ହର୍ଷ ଶୋକ ବିରୁଦ୍ଧଭୋଜନ ଜଳପାନ ତୀକ୍ଷ୍ଣଦ୍ରବ୍ୟ ରୁକ୍ଷଦ୍ରବ୍ୟ ମର୍ଦ୍ଦନ କାଷ୍ଠ ବା ନଖାଦିରେ କୁଣ୍ଡେଇବାର ଉପବାସ ବିଶେଷ ଶୋଇବାର୍ ।

## ଭଗ୍ନପ୍ରକରଣ ।

ପଥ୍ୟ ॥୦॥ ଶୀତଳଜଳ ସେଚନ କାଦୁଅଲେପ ଭଗ୍ନସ୍ଥାନ ବନ୍ଧନ ଶାଳିଧାନ ପ୍ରିୟଙ୍ଗୁ ଗହମ ମୁଗ ମଟର ଲହୁଣୀ ଘିଅ ଦୁଧ ତେଲ ମାଂସ ଯୂଷ ମହୁ ପଟୋଳ ରଶୁଣ ସଜନାକୁଢ଼ି ମଦରଙ୍ଗା କଦିମୂଳା ଦ୍ରାକ୍ଷା ଅଁଯୂଳା ହାତରଙ୍ଗା ଲାଖ ପୁଷ୍ଟିକର ଦ୍ରବ୍ୟ ॥

ଅପଥ୍ୟ । ଲବଣ କଟୁ କ୍ଷାର ଅମ୍ଳଦ୍ରବ୍ୟ ସ୍ତ୍ରୀସଙ୍ଗମ ଖରା ପରିଶ୍ରମ ରୂକ୍ଷଦ୍ରବ୍ୟ ।

ଭଗନ୍ଦରପ୍ରକରଣ ।

ପଥ୍ୟ । ଅପକ୍ୱ ଅବସ୍ଥାରେ ସଂଶୋଧନ ଔଷଧ ଲେପ ଉପବାସ ରକ୍ତମୋକ୍ଷଣ ଭଗନ୍ଦର ପାଚିଲେ ବୈଦ୍ୟ ମୁତାବକ ଶସ୍ତ୍ରକ୍ରିୟା କରିବ ଅଗ୍ନି କର୍ମ କ୍ଷାରପ୍ରୟୋଗ ଅପକ୍ୱ ବା ପକ୍ୱ ଉଭୟରେ ଶାଳିଧାନ ମୁଗ ବିଲେପି ଜାଙ୍ଗଲଜ ମୃଗ ଓ ପକ୍ଷିମାନଙ୍କ ମାଂସଯୂଷ ପଟୋଳ ସଜନାଛୁଇଁ ବେତକନ୍ଦା ମଦରଙ୍ଗା କସିମୂଳା ଖସାମାଳିପା ସୋରିଷମାଳିପା ତିକ୍ତବର୍ଗ ଘିଅ ମହୁ ।

ଅପଥ୍ୟ । ବିରୁଦ୍ଧ ଅନ୍ନ ଓ ପାନୀୟ ବିଷମ ଭୋଜନ ଖରା ବ୍ୟାୟାମ ସ୍ତ୍ରୀସଙ୍ଗମ ଯୁଦ୍ଧ ହସ୍ତ୍ୟାଦି ପିଠିରେ ଚଢ଼ିବାର ଗୁରୁଦ୍ରବ୍ୟ ଏପରି କ୍ଷତସ୍ଥାନ ଭରିଉଠିଲେ ଏକବର୍ଷ ପର୍ଯ୍ୟନ୍ତ ଏ ସମସ୍ତ ତ୍ୟାଗକରିବ ॥

ଉପଦଂଶ-ପ୍ରକରଣ ।

ପଥ୍ୟ । ବମନ ବିରେଚନ ଲିଙ୍ଗର ମଧ୍ୟଶିରା ବିଦ୍ଧ ଜୋକ ଲଗାଇବାର ଜଳ ସେଚନ ଲେପ ଯବଧାନ ଶାଳିଧାନ ଧନ୍ୱଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ମୁଗଯୂଷ ଘିଅ ପୁରୁଣୀଶାଗ ସଜନାଛୁଇଁ ପଟୋଳ ମଦରଙ୍ଗା କସିମୂଳା ତିକ୍ତଦ୍ରବ୍ୟ କଷାୟ ଦ୍ରବ୍ୟ ମହୁ କୂଅପାଣି ଖସାତେଲ ॥

ଅପଥ୍ୟ । ଦିବସନିଦ୍ରା ମୂତ୍ରବେଗଧାରଣ ଗୁରୁଦ୍ରବ୍ୟ ଭକ୍ଷଣ ସ୍ତ୍ରୀସଙ୍ଗମ ଗୁଡ ବ୍ୟାୟାମ ଅମ୍ଳଦ୍ରବ୍ୟ ତକ୍ର ॥

ଶୂକଦୋଷ-ପ୍ରକରଣ ।

**ପଥ୍ୟ** । ଲେପ ବିରେଚନ ରକ୍ତମୋକ୍ଷଣ ଘୃତପାନ ଶାଳିଧାନ ଯବଧାନ ଜାଙ୍ଗଲଜ ମାଂସ ମୁଗଯୂଷ କଲରା ପଟୋଳ ସଜନାଛୁଇଁ କାଙ୍କଡ଼

ମଦରଙ୍ଗା କସିମୂଳା ବେତକନ୍ଦା ଅଷାଡୁଅଫଳ ଡାଳମ୍ବ ସୈନ୍ଧବ ତ୍ରିଫ-ଳା କୁଅପାଣି ଶ୍ୱେତଚନ୍ଦନ କସ୍ତୁରି କର୍ପୂର ତକ୍ର କଷାୟଦ୍ରବ୍ୟ ଖସା-ତେଲ ॥୦॥

ଅପଥ୍ୟ । ମୂତ୍ର ବେଗଧାରଣ ଦିବସନିଦ୍ରା ବ୍ୟାୟାମ ସ୍ତ୍ରୀସଙ୍ଗମ ଗୁଡ଼ ବିଦାହିଦ୍ରବ୍ୟ ଗୁରୁଦ୍ରବ୍ୟ ତକ୍ର ॥

## କୁଷ୍ଠ-ପ୍ରକରଣ ।

ପଥ୍ୟ । କୁଷ୍ଠରୋଗରେ ପନ୍ଦରଦିନ ଅନ୍ତରରେ ବମନ ଏକମାସ ଅନ୍ତରରେ ବିରେଚନ ତିନଦିନ ଅନ୍ତରରେ ନସ୍ୟ ଛମାସ ଅନ୍ତରରେ ରକ୍ତମୋକ୍ଷଣ ଘୃତଲେପ ପୁରୁଣା ଯବଧାନ ଗହମ ଓ ଶାଳଧାନ ମୁଗ ହରଡ଼ ମହୁ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ଅଷାଡୁଅ-ଫଳ ବେତକନ୍ଦା ପଟୋଳ ଅକ୍ରାନ୍ତିଫଳ ଲୁଣିଲୁଣିଆ ଶାଗ ନିମ୍ବପତ୍ର ରସୁଣ ହିଡ଼ିମିଚ୍ଛଶାଗ ପୁରୁଣୀ ମହୁଲି ଗୃଳୁଣ୍ଡ୍ରାଶାଗ ଭଲ୍ଲିଆ ଯାଚଲ୍ମ-ତାଳ ଖଇର ଚିତାମୂଳ ତ୍ରିଫଳା ଜାଇଫଳ ନାଗେଶ୍ୱର କୁଙ୍କୁମ ପୁରୁଣା ଘିଅ ପିତାଭରଡ଼ା କରଞ୍ଜତେଲ ଖସାତେଲ ସୋରିଷତେଲ ନିମ୍ବତେଲ ଫୁଟିଫୁଟିକାତେଲ ଲଘୁପଦାର୍ଥ ସ୍ନେହପଦାର୍ଥ ସରଳକାଠ ଦେବଦାରୁ ଶିଶୁ ଅଗୁରୁ ଏ କାଠମାନଙ୍କର ତେଲ ଗୋରୁ ଘୋଡ଼ା ଗଧ ଓଟ ମଇଷି ଏମାନଙ୍କର ମୂତ୍ର କସ୍ତୁରି ଶ୍ୱେତଚନ୍ଦନ ତିକ୍ତଦ୍ରବ୍ୟ କ୍ଷାରପ୍ରୟୋଗ ।

ଅପଥ୍ୟ । ବ୍ରାହ୍ମଣସ୍ତ୍ରୀ ଗମନାଦି ଉପକାରିର ଅପକାର କରି ଗୁରୁ-ନିନ୍ଦା ଗୁରୁଜନମାନଙ୍କୁ ଅପମାନକରି ବିରୁଦ୍ଧ ପାନ ଓ ଭୋଜନ ଦିବସନିଦ୍ରା ସୂର୍ଯ୍ୟକିରଣ ବିଷମଭୋଜନ ସ୍ୱେଦ ସ୍ତ୍ରୀସଙ୍ଗମ ମଳ ଓ ମୂତ୍ରର ବେଗଧାରଣ ଆଖୁ ବ୍ୟାୟାମ ଅମ୍ଳଦ୍ରବ୍ୟ ଖସା କ୍ଷୀର ଦ୍ରବଦ୍ରବ୍ୟ ଗୁରୁ-ଦ୍ରବ୍ୟ ନୂତନଧାନ ବିଦାହିଦ୍ରବ୍ୟ ବିଷ୍ଟମ୍ଭୀଦ୍ରବ୍ୟ ମୂଳା ମହାଗିରି ଓ ବିନ୍ଧ୍ୟଗିରିଜାତ ନଦୀର ଜଳ ଅନୂପମାଂସ ଦହି ଦୁଧ ମଦ ଗୁଡ଼ ।

## ଶୀତ ପିତ୍ତ ଉଦର୍ଦ୍ଦ କୁଷ୍ଠ ପ୍ରକରଣ ।

ପଥ୍ୟ । ବମନ ବିରେଚନ ଲେପ ରକ୍ତମୋକ୍ଷଣ ପୁରୁଣା ଶାଳିଧାନ ଜାଙ୍ଗଲଦେଶଜ ମୃଗ ପ୍ରଭୃତିର ମାଂସଯୂଷ ମୁଗ କୁଳଥ୍ ଙ୍କାକଡ଼ କଲରା ସଜନାକ୍ଷୁଇଁ ମୂଳା ପୋଇଶାଗ ମଦରଙ୍ଗା ବେତକନ୍ଦା ଡାଳିମ୍ବ ତ୍ରିଫଳା ମହୁ ସୋରିଷତେଲ ଗରମପାଣି ପିତ୍ତଶ୍ଳେଷ୍ମନାଶକ ଦ୍ରବ୍ୟ କଟୁ ତିକ୍ତ କଷାୟ ପଦାର୍ଥ ।

ଅପଥ୍ୟ । ଛେନା ଗୁଡ଼ ମାଛ ଉଦକମାଂସ ଅନୂପଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ନୂଆମଦ ବମୀର ବେଗଧାରଣ ପୂର୍ବ ଓ ଦକ୍ଷିଣଦିଗର ପବନ ଦିବସନିଦ୍ରା ସ୍ନାନ ବିରୁଦ୍ଧଭୋଜନ କ୍ଷୀର ସ୍ନିଗ୍ଧଦ୍ରବ୍ୟ ଅମ୍ଳଦ୍ରବ୍ୟ ମଧୁରଦ୍ରବ୍ୟ କଷାୟଦ୍ରବ୍ୟ ଗୁରୁଅନ୍ନ ଓ ପାନୀୟ ।

## ଅମ୍ଳପିତ୍ତ-ପ୍ରକରଣ ।

ପଥ୍ୟ । ଊର୍ଦ୍ଧ୍ୱଗତ ଅମ୍ଳପିତ୍ତରେ ପ୍ରଥମେ ବମନ ଅଧୋଗତ ଅମ୍ଳପିତ୍ତରେ ପ୍ରଥମେ ବିରେଚନ ଉଭୟ ମିଳିତ ଅମ୍ଳପିତ୍ତରେ ଅନ୍ନଭୋଜନ ତତ୍ପରେ ନିରୁହ ଶାଳିଧାନ ଯବଧାନ ଗହମ ମୁଗ ଜାଙ୍ଗଲଦେଶଜ ମାଂସଯୂଷ ଉଷ୍ଣ ଓ ଥଣ୍ଡାଜଳ ନବାତ ମହୁ ଛତୁଆ କାଙ୍କଡ଼ କଲରା ପଟୋଳ ହିଡ଼ମିଚ୍ଛ ଶାଗ ବେତକନ୍ଦା ପୁରୁଣା ପାଣିକଖାରୁ କଦଳୀଭଣ୍ଡା ବଥୁଆଶାଗ କଇଥ ଡାଳିମ୍ବ ଅଁଳା ତିକ୍ତଦ୍ରବ୍ୟ କଫ ଓ ପିତ୍ତନାଶକ ଅନ୍ନ ଓ ପାନୀୟ ।

ଅପଥ୍ୟ । ନୂତନ ଧାନ ବିରୁଦ୍ଧ ଦ୍ରବ୍ୟ ପିତ୍ତପ୍ରକୋପଦ୍ରବ୍ୟ ମଳମୂତ୍ର ବେଗଧାରଣ ଖସା କ୍ଷୀର କୁଳଥ୍ ତେଲ ଖାଇବା ମେଣ୍ଢି ଦୁଧ କାଞ୍ଜି ଲବଣ ରସଯୁକ୍ତ ଦ୍ରବ୍ୟ ଅମ୍ଳ ଦ୍ରବ୍ୟ କଟୁ ଦ୍ରବ୍ୟ ଗୁରୁ ଦ୍ରବ୍ୟ ଦହି ମଦ ।

## ବିଷ-ପ୍ରକରଣ ।

ପଥ୍ୟ । ବିରେଚନ ବମନ ଲେପ ଉପବାସ ରକ୍ତମୋକ୍ଷଣ ପୁରୁଣା

ଯବଧାନ ଗହମ କାଙ୍ଗୁ ଷାଠିକାଧାନ ଶାଳଧାନ ମୁଗ ମସୁର ଚଣା ହରଡ଼ ଜାଙ୍ଗଲଦେଶଜ ମୃଗ ଓ ପକ୍ଷିମାନଙ୍କ ମାଂସ ଲହୁଣୀ ଘିଅ ଦ୍ରାକ୍ଷା ଡାଳମ୍ବ କଲରା ବେଢକନ୍ଦା ପଟୋଲ ଅଁଳା ଖଇର ନାଗେଶ୍ୱର ଲକ୍ଷ ଶିରୀଷ କର୍ପୂର ରକ୍ତଚନ୍ଦନ ଖସାଲେପ କୁରୁବେଲ ମୁଥା ତିକ୍ତଦ୍ରବ୍ୟ ।

ଅପଥ୍ୟ । ବ୍ୟାୟାମ ଦିବାନିଦ୍ରା ସ୍ତ୍ରୀସଙ୍ଗମ ବିଶେଷ ପବନ ସେବା କ୍ରୋଧ ଶୋକ ବମନ ବେଗଧାରଣ ଗୁଣୀଲୋକଙ୍କୁ ଦୋଷୀ କରିବାର ଶାଗ ବିରୁଦ୍ଧ ଭୋଜନ ଦହି ଛେନା ସୌବୀର ନାନାପ୍ରକାର ମଦ ନାନାପ୍ରକାର ପୁଷ୍ଟିକର ଦ୍ରବ୍ୟ ଦୁଧଛେନା ସମସ୍ତ ଗୁରୁଅନ୍ନ ପାନୀୟ ରସୁଣ କୁଲଥି ଖୀର ଖସା ଜାଙ୍ଗଲଦେଶଜ ମାଂସ ଛାଡି ଅନ୍ୟ ସମସ୍ତ ମାଂସ ସ୍ୱେଦ ବିଦାହିଦ୍ରବ୍ୟ ଲବଣ ଅମ୍ଳିଲ କଟୁପଦାର୍ଥ ମଦ ସୂର୍ଯ୍ୟକିରଣ ।

## ବିସ୍ଫୋଟ ପ୍ରକରଣ ।

ପଥ୍ୟ । ବିରେଚନ ବମନ ଲେପ ଲଙ୍ଘନ ପୁରୁଣାଷାଠିକା ଓ ଶାଳଧାନ ଯବଧାନ ମୁଗ ମସୁର ଚଣା ବଣମୁଗ ଧନ୍ୱଦେଶଜ ମାଂସ ଘିଅ କଲରା ବେଢକନ୍ଦା ଅଖାଡୁଅଫଳ ପଟୋଲ ପୁନ୍ନପୁଟିକା ନିମ୍ବ ରକ୍ତଚନ୍ଦନ ଖସାଢେଲ କର୍ପୂର ବଟାଖସା ଲେପ ମୁଥା କୁରୁବେଲ ।

ଅପଥ୍ୟ । ସ୍ୱେଦ ସ୍ତ୍ରୀସଙ୍ଗମ ବ୍ୟାୟାମ କ୍ରୋଧ ଗୁରୁଦ୍ରବ୍ୟ ଖରା ବମିବେଗଧାରଣ ପତ୍ର ଶାଗ ଅଭ୍ୟନ୍ତ ପବନ ଦିବସନିଦ୍ରା ଗ୍ରାମ୍ୟ ଜନ୍ତୁର ମାଂସ ଉଦକମାଂସ ଆନୂପମାଂସ ବିରୁଦ୍ଧ ଭୋଜନ ଖସା ଖୀର କୁଲଥି ଲବଣ ରସଯୁକ୍ତ ଦ୍ରବ୍ୟ ଅମ୍ଳଦ୍ରବ୍ୟ କଟୁଦ୍ରବ୍ୟ ବିଦାହିଦ୍ରବ୍ୟ ରୁକ୍ଷଦ୍ରବ୍ୟ ଉଷ୍ଣଦ୍ରବ୍ୟ ।

## ମସୂରିକା ପ୍ରକରଣ ।

ପଥ୍ୟ । ମସୂରିକା ( ବସନ୍ତ ) ପ୍ରଥମେ ଲଙ୍ଘନ ବମନ ବିରେଚନ ଶିରାବେଧ ଚନ୍ଦ୍ରକିରଣ ପୁରୁଣା ଷାଠିକା ଓ ଶାଳଧାନର ଅନ୍ନ ଚଣା ମୁ-

ଗ ମୟୂର ଯବଧାନ କାପଡା ଧରଚଟିଅ ତାତ୍ତ୍ୱିକ ବଗ ଚକୁଆଚକୈ ଶୁକ ପ୍ରଭୃତ ସମସ୍ତ ପ୍ରତୁଦ ପକ୍ଷିର ମାଂସ ପଟୋଲ କଲସ୍ ଅଖାଡୁଅ-ଫଳ କାଙ୍କଡ଼ କଦଳୀ ସଜନାକୁଁଇ ଠଭ୍ ଦ୍ରାକ୍ଷା ଡାଳମ୍ବ ନିର୍ମଳ ରହି-ବାର ପୁଷ୍ଟିକର ଅନ୍ନ ଓ ପାନୀୟ ପଞ୍ଚକୋଲ ଖୀର ଚନ୍ଦନ ମହୁଲଫୁଲ ସିଝା ଜଳ ଗେଣ୍ଡା ଭତର ଜଳ ଚକ୍ଷୁ ଉପରେ ସେଚନ ଅଥବା କର୍ପୂ-ର ଚୂର୍ଣ୍ଣ ମିଶ୍ରିତ ଜଳ ପ୍ରୟୋଗ କରିବ. ପାଚନ୍ତ ବସନ୍ତରେ ମୁଗର ଯୂଷ ଜାଙ୍ଗଲଜ ମାଂସର ଯୂଷ ହିଡମିଚ୍ଚ ଶାଗ ଘିଅ ବେଗୁନିଅ ପତ୍ର ଝୁଣାଦ ଧୂପ ଦେହରେ ସର୍ବଦା ଗୋରୁ ଘସିବ ପାଉଁଷ ମର୍ଦ୍ଦନ ବସନ୍ତ ଶୁଷ୍କ ହେଲେ ନିମ୍ବପତ୍ର ହଳଦୀ ଏକତ୍ରରେ ବାଟି ଶରୀରରେ ଲେପ ବସନ୍ତ-ଶେଷରେ ବ୍ରଣ ରୋଗୋକ୍ତ ଚିକିତ୍ସା କରିବ ।

ଅପଥ୍ୟ । ସ୍ତ୍ରୀସଙ୍ଗମ ସ୍ୱେଦ ପରିଶ୍ରମ ତେଲ ଗୁରୁଦ୍ରବ୍ୟ କ୍ରୋଧ ଖରା ଦୂଷିତ ଜଳ ଦୂଷିତ ପବନ ବିରୁଦ୍ଧ ଭୋଜନ ଶିମ୍ବ ଅଳ୍ପ ଶାଗ ଲବଣ ବିଷମ ଭୋଜନ କଟୁଦ୍ରବ୍ୟ ଅମ୍ଳଦ୍ରବ୍ୟ ମଳ ଓ ମୂତ୍ରର ବେଗଧାରଣ ।

## କ୍ଷୁଦ୍ରରୋଗ-ପ୍ରକରଣ ।

ପଥ୍ୟ । ନାନାପ୍ରକାର ରୋଗର ଅନୁପକାର କ୍ଷୁଦ୍ର ରୋଗ ସମୂହର ଦୋଷ ( ବାତ ପିତ୍ତ ଓ କଫ ) ଦୂଷ୍ୟ ( ରସ ରକ୍ତାଦି ) ଏପର ରୋ-ଗିର ଅବସ୍ଥା ଦେଖି ସେହି ସେହି ରୋଗର ଦୋଷ ଓ ଦୂଷ୍ୟ ଏବଂ ଅବ-ସ୍ଥାନୁସାରେ ପଥ୍ୟ ବିବେଚନା କରିଦେବ ।

## ମୁଖରୋଗ-ପ୍ରକରଣ ।

ପଥ୍ୟ । ସ୍ୱେଦ ବିରେଚନ ବମନ ଗଣ୍ଡୂଷ ଧାରଣ ପ୍ରତିସାରଣ କବ-ଳଗ୍ରହଣ ରକ୍ତମୋକ୍ଷଣ ନସ୍ୟ ଧୂମପାନ ଶସ୍ତ୍ରକ୍ରିୟା ଅଗ୍ନିକର୍ମ ତୃଣଧାନ ଯବଧାନ ମୁଗ କୁଳଥ୍ଥ ଜାଙ୍ଗଲଜ ମାଂସଯୂଷ ବଡ ପୁଟିମାଛ କଲରା ପଟୋ-

ଳ କସିମୂଳା କର୍ପୂର ମିଶ୍ରିତ ଜଳ ତାମ୍ବୂଲ ଗରମ ଜଳ ଖଇର ଘିଅ କଟୁ ଦ୍ରବ୍ୟ ତିକ୍ତ ଦ୍ରବ୍ୟ ।

ଅପଥ୍ୟ । କାଷ୍ଠରେ ଦନ୍ତ ଘର୍ଷଣ ସ୍ନାନ ଅମ୍ଳଦ୍ରବ୍ୟ ମାଛ ଅନୂପ-ମାଂସ ଦହି ଦୁଧ ଗୁଡ଼ ମାଷ ରୂକ୍ଷଦ୍ରବ୍ୟ ଟାଣ ପଦାର୍ଥ ଭକ୍ଷଣ ମୁହଁ ତଳ-କୁ କରି ଶୟନ ଗୁରୁଦ୍ରବ୍ୟ କଫଜନକ ଦ୍ରବ୍ୟ ଦିବସନିଦ୍ରା ।

## କଣ୍ଠରୋଗ-ପ୍ରକରଣ ।

ପଥ୍ୟ । ସ୍ୱେଦ ବିରେଚନ ବମନ ନସ୍ୟ ଧୂମପାନ ଶିରାବେଧ ଗହମ ଶାଳିଧାନ ମୁଗ ଯବଧାନ ପୁରୁଣା ଘିଅ ଲାବ ମୟୂର ତିତିର ହରିଣ ବଣ କୁକୁଡ଼ା ପଟୋଳ ସଜନାଛୁଇଁ ବାଇଗଣ ସୁନୁସୁନିଆ କଲରା ସମସ୍ତ ରସାୟନ କ୍ରିୟା ।

ଅପଥ୍ୟ । ବିରୁଦ୍ଧ ଅନ୍ନ ଓ ପାନୀୟ ମଳ ଓ ମୂତ୍ରର ବେଗଧାରଣ ସ୍ତ୍ରୀ ସଙ୍ଗମ ବାକ୍ୟ କଥନ ଦନ୍ତକାଷ୍ଠ ଶୀରଃସ୍ନାନ ବ୍ୟାୟାମ କଫକର ଦ୍ରବ୍ୟ ଗୁରୁ ଦ୍ରବ୍ୟ କାନ କୁଣ୍ଡେଇବାର ହିମ ସେବନ ।

## ନାସା ରୋଗ ପ୍ରକରଣ ।

ପଥ୍ୟ । ପବନ ଶୂନ୍ୟସ୍ଥାନରେ ଅବଗାହନ ଅତ୍ୟନ୍ତ ଗାଢରେ ମୁଣ୍ଡରେ ପାଗ ବାନ୍ଧିବାର ଗଣ୍ଡୂଷ ଧାରଣ ଉପବାସ ନସ୍ୟ ଧୂମପାନ ବମନ ଶିରାବେଧ କଟୁ ଦ୍ରବ୍ୟ ଚୂର୍ଣ୍ଣକରି ନାସ ଘେନିବାର ସ୍ୱେଦ ସ୍ନେହ ପ୍ରୟୋଗ ମୁଣ୍ଡରେ ତୈଳ ମର୍ଦ୍ଦନ ପୁରୁଣା ଯବଧାନ ଓ ଶାଳିଧାନ କୁଲଥି ଓ ମୁଗର ଯୂଷ ଗ୍ରାମ୍ୟ ଓ ଜାଙ୍ଗଲଜ ମାଂସର ଯୂଷ ବାଇଗଣ ପଟୋଳ ସଜନାଫଳ କାଙ୍କୁଡ଼ କସିମୂଳା ରସୁଣ ଦହି ଗରମ ଜଳ ବାରୁଣୀ ମଦ ତିକ୍ତକଟୁ କଟୁ ଦ୍ରବ୍ୟ ଅମ୍ଳ ଦ୍ରବ୍ୟ ସ୍ନିଗ୍ଧ ଦ୍ରବ୍ୟ ଉଷ୍ଣ ଓ ଲଘୁ ଭୋଜନ ।

ଅପଥ୍ୟ । ବିରୁଦ୍ଧଦ୍ରବ୍ୟ ଭୋଜନ ଦିବସନିଦ୍ରା ଶ୍ଳେଷ୍ମକରଦ୍ରବ୍ୟ ଗୁରୁଦ୍ରବ୍ୟ ସ୍ନାନ କ୍ରୋଧ ମଳ ଓ ମୂତ୍ରର ବେଗଧାରଣ ଅଶ୍ରୁରୋଧ ଶୋକ ତରଳଦ୍ରବ୍ୟ ଭୂମିଶଯ୍ୟା ।—

ନେତ୍ରରୋଗ-ପ୍ରକରଣ ।

ପଥ୍ୟ । ଲଙ୍ଘନ ଅଞ୍ଜନ ସ୍ୱେଦ ବିରେଚନ ପ୍ରତିସାରଣ ଅକ୍ଷିପୂରଣ ନସ୍ୟ ରକ୍ତମୋକ୍ଷଣ ଶସ୍ତ୍ରକ୍ରିୟା ଲେପ ଘୃତପାନ ସେକ ମନର ସ୍ଥିରତ୍ୱ ପାଦଦୁଇରେ କେଉଁଣସି ଆଘାତ ନ ଲାଗିବ ଏପରିସାବଧାନ ମୁଗ ଯବ-ଧାନ ରଙ୍ଗଶାଳଧାନ ଲାବ ମୟୂର ବଣକୁକୁଡ଼ା କଇଁଛ କୁଳଙ୍ଗ ଗୃଦ୍ଧ-କପକ୍ଷି ଏମାନଙ୍କ ମାଂସ ଦଶବରଷର ଉର୍ଦ୍ଧ୍ୱ ପୁରୁଣାଘିଅ ବଣକୁଳଥି ପେସ୍ତା ବିଲେସୀ ରସୁଣ ପଟୋଳ ବାଇଁଗଣ କାଙ୍କଡ଼ କଲରା କସିଉଣ୍ଡା କସିମୂଳା ପୁରୁଣୀ ଭୃଙ୍ଗରାଜ ଲୁଣୁଲୁଣିଆ ମଦରଙ୍ଗା ଘିକୁଆର ଦ୍ରାକ୍ଷା ଧନିଆ ସୈନ୍ଧବ ଲୋଧ୍ର ତ୍ରିଫଳା ମଧୁ ଲେପ ସ୍ତ୍ରୀଦୁଧ ରକ୍ତଚନ୍ଦନ କର୍ପୂର ତିକ୍ତପଦାର୍ଥ ଲଘୁପଦାର୍ଥ ॥

ଅପଥ୍ୟ । କ୍ରୋଧ ଶୋକ ସ୍ତ୍ରୀସଙ୍ଗମ ଅଶ୍ରୁ ବାୟୁ ମଳ ମୂତ୍ର ନିଦ୍ରା ଓ-ବମି ଏମାନଙ୍କ ବେଗଧାରଣ ସୂକ୍ଷ୍ମପଦାର୍ଥ ଦେଖିବାର କାଷ୍ଠରେ ଦନ୍ତ-ଘର୍ଷଣ ସ୍ନାନ ରାତ୍ରିଭୋଜନ ଖରା ତରଳଦ୍ରବ୍ୟ ଧୂଳି ଧୂମପାନ ଚକ୍ଷୁଃସ୍ୱେଦ ବିରୁଦ୍ଧଦ୍ରବ୍ୟ ଅତ୍ୟନ୍ତ ବାକ୍ୟକଥନ ବମନ ଜଳପାନ ମହୁଲ ଦହି ପତ୍ର-ଶାଗ ତରଭୁଜ ବଟାଖସା କ୍ଷୀରଧାନର ଅନ୍ନ ମାଛ ମଦ ଜାଙ୍ଗଲଜ ମାଂସ-ଭିନ୍ନ ଅନ୍ୟମାଂସ ତାମ୍ବୂଳ ଅମ୍ଳଦ୍ରବ୍ୟ ଲବଣଦ୍ରବ୍ୟ ବିଦାହିଦ୍ରବ୍ୟ ତୀକ୍ଷ୍ଣଦ୍ରବ୍ୟ କଟୁଦ୍ରବ୍ୟ ଉଷ୍ଣଦ୍ରବ୍ୟ ଗୁରୁଅନ୍ନ ଓ ପାନୀୟ ॥

ଶିରରୋଗ ପ୍ରକରଣ ।

ପଥ୍ୟ । ସ୍ୱେଦ ନସ୍ୟ ଧୂମପାନ ବିରେଚନ ଲେପ ବମନ ଉପବାସ ଶିରୋବସ୍ତି ରକ୍ତମୋକ୍ଷଣ ଅଗ୍ନି କର୍ମ ମସ୍ତକବନ୍ଧନ ପୁରୁଣାଘିଅ ପୁରୁଣା

ଶାଳ ଓ ଷାଠିକାଧାନ ଧନ୍ୱଦେଶଜ ମାଂସଯୂଷ ଦୁଧ ପଟୋଳ ସଜନା-ଛୁଇଁ ଦ୍ରାକ୍ଷା ବଥୂଆଶାଗ କଲମ୍ବ ଡମ୍ବା ଅଁଳା ଡାଳମ୍ବ ଟଭ୍ର ଖସାଡେଲ ଭଙ୍କ କାଞ୍ଜୀ ନଡଆ ହରଡ଼ା କୁଡ ଭୃଙ୍ଗରାଜ ଘିକୁଆର ମୁଥା ବେଣା-ଚେର ଅଳାଇଚ ଶ୍ୱେତଚନ୍ଦନ କର୍ପୂର ॥

ଅପଥ୍ୟ । ଛିଙ୍କ ହାଇ ମୂତ୍ର ମ୍ଳେଡକ ନିଦ୍ରା ଓମଳ ଏମାନଙ୍କର ବେଗଧାରଣ ଅଞ୍ଜନ ବ୍ୟବହାର ଦୂଷିତଜଳ ବିରୁଦ୍ଧଦ୍ରବ୍ୟ ମଦ୍ୟାଦିର ଓ ବିନ୍ଧ୍ୟଗିରିଜାତ ନଦୀର ଜଳ କାଷ୍ଠରେ ଦନ୍ତଘର୍ଷଣ ଦିବସନିଦ୍ରା ॥

## ସ୍ତ୍ରୀରୋଗ-ପ୍ରକରଣ ।

ପଥ୍ୟ । ପ୍ରଥମେ ପ୍ରଦର ରକ୍ତପିତ୍ତରୋଗରେ ଯେ ପଥ୍ୟ ତାହା ପ୍ରଦ-ରରୋଗରେ ବ୍ୟବହାର କରିବ । ଦ୍ୱିତୀୟ ଯୋନି ବ୍ୟାପଦରୋଗ ବାତ-ପିତ୍ତ ଓ କଫ ଯେ ପଥ୍ୟ ଶେଷରେ ଲେଖାହେବ ତାହା ପୃଥକ୍‌ପୃଥକ୍ ବୁଦ୍ଧିମାନ୍ ଚିକିତ୍ସକ ବିଂଶତ ପ୍ରକାର ଯୋନିରୋଗରେ ଦୋଷାନୁସାରେ ସେହି ପଥ୍ୟ ବ୍ୟବହାର କରିବ । ତୃତୀୟ ଗର୍ଭିଣୀପଥ୍ୟ । ଶାଳଧାନ ଓ ଷାଠିକାଧାନ ମୁଗ ଗହମ ଲିଆଛତୁ ଲହୁଣୀ ଘିଅ ଦୁଧ ରସାଳା ମହୁ ନବାତ ପଣସ କଦଳୀ ଅଁଳା ଦ୍ରାକ୍ଷା ଆମ୍ବ ସ୍ୱାଦୁଦ୍ରବ୍ୟ ଶୀତଳଦ୍ରବ୍ୟ କସ୍ତୂରୀ ଚନ୍ଦନ ମାଲ୍ୟପୁଷ୍ପଧାରଣ କର୍ପୂର ଅନୁଲେପ ଅଳାଇଚ ସ୍ନାନ ଅଭ୍ୟଙ୍ଗ କୋମଳଶଯ୍ୟାରେ ଶୟନ ଶୀତଳପବନ ସେବନ ସନ୍ତର୍ପଣ-କ୍ରିୟା ପ୍ରିୟବାକ୍ୟ ଇଚ୍ଛାନୁସାରେ ବିହାର ତୃପ୍ତିଜନକ ଅନ୍ନ ଓ ପାନ ॥

ଅପଥ୍ୟ । ସ୍ୱେଦ ବମନ କ୍ଷାର କଲହ ବିଷମଭୋଜନ ଅସାତ୍ମ୍ୟସେବନ ରାତ୍ରିରେ ଭ୍ରମଣ ଗୈରିକରବାର ଭୟଦର୍ଶନ ଅତିଶୟ ପୁରୁଷସଙ୍ଗମ ବ୍ୟାୟାମ ଭାରବହନ ଅତିଶୟଗାଢ଼ ବସ୍ତ୍ର ପରିଧାନ ରାତ୍ରିଜାଗର ଦିବ-ସନିଦ୍ରା କଠିନସ୍ଥାନରେ ଅଥବା ବିଷମ ସ୍ଥାନରେ ବସିବାର ଶୋକ କ୍ରୋଧ ଭୟ ଉଦ୍ବେଗ ମଳ ଓ ମୂତ୍ରର ବେଗଧାରଣ ଶ୍ରଦ୍ଧାବିଘାତ ଉପ-

ବାସ ପଥଶ୍ରମ ତୀକ୍ଷ୍ଣଦ୍ରବ୍ୟ ଉଷ୍ଣଦ୍ରବ୍ୟ ଗୁରୁଦ୍ରବ୍ୟ ବିଷ୍ଟମ୍ଭୀଦ୍ରବ୍ୟ ରାତ୍ରରେ ଉପବାସ ଲଣ୍ଡ୍ରାକୁଅଦର୍ଶନ ମଦ୍ୟପାନ ମାଂସଭକ୍ଷଣ ଏହିସବୁ ଶୋଇବାର ସ୍ତ୍ରୀମାନଙ୍କର ଯେ ନିଷେଧକାର୍ଯ୍ୟ ତାହା ଗର୍ଭିଣୀ ସ୍ତ୍ରୀ ନିଷେଧ କରିବ ଗର୍ଭର ଅଷ୍ଟମମାସରେ ରକ୍ତସ୍ରାବ ବମନ ବିରେଚନ ଓ ବସ୍ତିକ୍ରିୟା ପ୍ରୟୋଗକଲେ ଅପୂର୍ଣ୍ଣ ଅବସ୍ଥାରେ ଗର୍ଭସ୍ରାବ ହୋଇ ନଷ୍ଟ ହୁଏ ଅଥବା ଗର୍ଭାଶୟମଧ୍ୟରେ ଶୁଷ୍କ ହୋଇଂ ମୃତ୍ୟୁ ହୁଏ । ତିକ୍ତଦ୍ରବ୍ୟ ଅମ୍ଳଦ୍ରବ୍ୟ କଟୁଦ୍ରବ୍ୟ କଷାଦ୍ରବ୍ୟ ଓ ଲବଣରସଯୁକ୍ତ ଦ୍ରବ୍ୟ ନିତ ଖାଇବନାହିଁ—ବାୟୁକର ପଦାର୍ଥ ଖାଇଲେ ଗର୍ଭସ୍ଥ ସନ୍ତାନ କୁଜା ଅନ୍ଧ ଜଡ ଓ ବାମନ ହୁଅନ୍ତି । ପିତ୍ତକର ଦ୍ରବ୍ୟ ଖାଇଲେ ସନ୍ତାନ ନପୁଂସକ ଓ କପିଲବର୍ଣ୍ଣ ହୁଏ କଫକର ଦ୍ରବ୍ୟ ଖାଇଲେ ସନ୍ତାନ ଧବଳକୁଷ୍ଠ ଓ ପାଣ୍ଡୁରୋଗଯୁକ୍ତ ହୁଏ ॥

## ପ୍ରସୂତୀ-ପ୍ରକରଣ ।

ପଥ୍ୟ । ଉପବାସ ମୃଦୁସେକ ଗର୍ଭାଶୟଶୋଧନ ତୈଳାଭ୍ୟଙ୍ଗ ତେଲପିଇବାର କଟୁ ତିକ୍ତ ଓ ଉଷ୍ଣଦ୍ରବ୍ୟ ସେବନ ଅଗ୍ନିଦୀପ୍ତିକର ଦ୍ରବ୍ୟ ପାଚକଦ୍ରବ୍ୟ ମଦ ପୁରୁଣାଶାଳିଧାନ ଓ ଷାଠିକାଧାନ କୁଳଥ ରସୁଣ ସଜନାଛୁଇଁ ବାଇଗଣ କସିମୂଳା ପଟୋଳ ଝିଙ୍ଗ ତାମ୍ବୂଳ ଖଟା ଓ ମିଠା-ଡାଳିମ୍ବ କଫନାଶକ ଦ୍ରବ୍ୟ ବାୟୁନାଶକ ଦ୍ରବ୍ୟ ସାତଦିନପର୍ଯ୍ୟନ୍ତ ଏ ସମସ୍ତ ଆହାର କରିବ ଏ ପର ବାରଦିନ ପର୍ଯ୍ୟନ୍ତ କିଛି ପୁଷ୍ଟିକର ସାମଗ୍ରି ବ୍ୟବହାର କରିବ ତଦନନ୍ତର କିଛି ପରିମାଣରେ ମାଂସାଦି ବ୍ୟବହାର କରିବ ପନ୍ଦରଦିନପରେ ଇଚ୍ଛାନୁସାରେ ଆହାର କରିବ । ଗର୍ଭ ଖଲାସ ହେବାର କଷ୍ଟ ହେଲେ କଳାସର୍ପର ଚର୍ମ ଉଷ୍ଣ ମନୁସଙ୍ଗରେ ଖଲ ଚକ୍ଷୁରେ ଅଞ୍ଜନଦେବ ଏପର କଟୀଦେଶରେ ଦୁଇହାତରେ ଫୁଙ୍କି ମାରିବ ଦୁଇକାନ୍ଧକୁ ଖୁରୁଟାଣରେ ଚିପିବ ତାକୁ ଓ କଣ୍ଠଦେଶରେ ବାଲଲଗାଇଁ ମୁଣ୍ଡରେ ସିଦ୍ଧୁକ୍ଷୀର ଲିପିବ ଭୂର୍ଜପତ୍ର ମହୁରି ଲାଉତକ୍ଷସାପର କାଞ୍ଚ କୁଡ଼

ସୋରଷ ଏମାନଙ୍କୁ ପୃଥକ୍‌ପୃଥକ୍ ଅଥବା ଦୁଇଗୋଷ୍ଠୀ ଅଥବା ସମସ୍ତ ଏକତ୍ରକର ଯୋନିରେ ଧୂପ କିମ୍ବା ଲେପ ଦେବ ଯେ ପର୍ଯ୍ୟନ୍ତ ପ୍ରସବ ନ ହୁଏ ସେ ପର୍ଯ୍ୟନ୍ତ ନାରୀମାନଙ୍କୁ ସନ୍ତାନ ଦର୍ଶନ ପର୍ଯ୍ୟନ୍ତ ପୁରାଣ କଥା ଉପଲକ୍ଷରେ ଗାନ୍ଧାରୀ ପ୍ରଭୃତି ବହୁପୁତ୍ର ପ୍ରସବବାର ଶ୍ରବଣ କରାଇବ ॥

ଅପଥ୍ୟ । ପରିଶ୍ରମ ନସ୍ୟ ରକ୍ତମୋକ୍ଷଣ ମୈଥୁନ ବିଷମଭୋଜନ ବିରୁଦ୍ଧଦ୍ରବ୍ୟ ଭୋଜନ ମଳ ଓ ମୂତ୍ରାଦିର ବେଗଧାରଣ ଅସାତ୍ମ୍ୟସେବନ ଅତ୍ୟନ୍ତ ଭୋଜନ ଦିବସନିଦ୍ରା କଫକରଦ୍ରବ୍ୟ ବିଷ୍ଟମ୍ଭୀଦ୍ରବ୍ୟ ଗୁରୁଦ୍ରବ୍ୟ ଭୋଜନ ॥

ସୂତିକାରୋଗ-ପ୍ରକରଣ

ପଥ୍ୟ । ସୂତିକାରୋଗରେ ବାତ ଓ କଫର ଯେ ଯେ ପଥ୍ୟ ଶେଷରେ ଲେଖାଯିବ ତାହା କରିବ ॥

ବାଳକରୋଗ-ପ୍ରକରଣ ।

ପଥ୍ୟ । ଜ୍ୱର ଓ ଅତିସାରରୋଗରେ ଯେ ପଥ୍ୟ ଲେଖାହୋଇଁଅଛି ତାହା ବାଳକମାନଙ୍କ ଜ୍ୱର ଓ ଅତିସାରରେ ପ୍ରୟୋଗକରିବ ବାଳକ-ମାନଙ୍କର ପାରିଗର୍ଭିକ ରୋଗ ହେଲେ ଅଜୀର୍ଣ୍ଣରୋଗୋକ୍ତ ପଥ୍ୟ ଦେବ ଗ୍ରହଦୁଷ୍ଟ ବାଳକମାନଙ୍କୁ ଆଗନ୍ତୁକ ଉନ୍ମାଦର ପଥ୍ୟ ପ୍ରୟୋଗ କରିବ ॥

ବିଷରୋଗ-ପ୍ରକରଣ ।

ପଥ୍ୟ । ଅରିଷ୍ଟବନ୍ଧନ ମନ୍ତ୍ରକ୍ରିୟା ବମନ ବିରେଚନ ବିଷାକର୍ଷଣ ରକ୍ତାକର୍ଷଣ ପରିସେଚନ ଅବଗାହନ ସ୍ନାନ ହୃଦୟାବରଣ ନସ୍ୟ ଚକ୍ଷୁରେ ଅଞ୍ଜନ ପ୍ରତିସାରଣ ଉଦ୍ୱର୍ତ୍ତନ ପ୍ରଧମନ ଲେପ ଅଗ୍ନିକର୍ମ ଶିରୋଧାନ ବିପରୀତ ବିଷପ୍ରୟୋଗ ଅର୍ଥାତ୍ ସ୍ଥାବର ବିଷପ୍ରୟୋଗରେ ଜଙ୍ଗମବିଷ ଜଙ୍ଗମ ବିଷାକ୍ରାନ୍ତରେ ସ୍ଥାବରବିଷ ପ୍ରୟୋଗ କରିବ ଚେତନା ଉତ୍ତେଜକର ଧୂପ ଶାଳି ଓ ଷାଠିକାଧାନ କୋଦୁଅ କାଙ୍ଗୁ

ମୁଗ ମଟର ତେଲ ପୁରୁଣା ଘିଅ ନୂତନ ଘିଅ ମୟୂର ତିତ୍ତିର ଲାବ ମୃଗ ଗୋଧି ମୂଷା ସଜାରୁ ଏମାନଙ୍କ ମାଂସ ବାଇଗଣ ପଟୋଲ ଅଁଳା ଶିମ୍ବ ଲେଉଟିଆଶାଗ ଥାଲକୁଡ଼ି ଗୁଳୁଚ ପୁନନ୍ନବା ପୋଇଶାଗ ପିତାପୋଇଶାଗ ରସୁଣ ଡାଳିମ୍ବ ଭଇଁଚକୋଳି ପୁରୁଣା ଅଁଳା ହରଡ଼ା କଇଥ ନାଗେଶ୍ୱର ଗୋମୂତ୍ର ଛେଳିମୂତ୍ର ମନୁଷ୍ୟମୂତ୍ର ତକ୍ର କାକରପାଣି ନବାତ ବଦାହଦ୍ରବ୍ୟ ସୈନ୍ଧବ ମହୁ କୁଙ୍କୁମ ପଶ୍ଚିମପବନ ଉତ୍ତରପବନ ହଳଦୀ ଶ୍ୱେତଚନ୍ଦନ ମୁଥା ଶିରୀଷ କସ୍ତୂରୀ ତିକ୍ତଦ୍ରବ୍ୟ ମଧୁରଦ୍ରବ୍ୟ ଶୁଶ୍ରୂଷା ।

ଅପଥ୍ୟ । କ୍ରୋଧ ଗୁରୁଦ୍ରବ୍ୟଭୋଜନ ଅଧ୍ୟଶନ ମୈଥୁନ ତାମ୍ବୂଲ ବ୍ୟାୟାମ ବାୟୁସେବନ ଅମ୍ଳଦ୍ରବ୍ୟ ଲବଣ ରସଯୁକ୍ତ ଦ୍ରବ୍ୟ ସ୍ୱେଦ ନାନାବିଧ ବାସିଦ୍ରବ୍ୟ ନିଦ୍ରା ଭୟ ଧୂମବର୍ତ୍ତି କ୍ଷୁଧା ହେଲେ ଖାଇବାକୁ ନ ଦେବାର ।

ବ୍ୟାଧିସଙ୍କର-ପ୍ରକରଣ ।

ପଥ୍ୟ । ବ୍ୟାଧିମାନଙ୍କ ମଧ୍ୟରୁ ଦୁଇ ଅଥବା ତହିଁରୁ ଅଧିକ କେଉଁଣସି କେଉଁଣସି ରୋଗ ଏକତ୍ର ହୋଇ ପ୍ରକାଶ ପାଇଲେ ନିର୍ଦ୍ଦିଷ୍ଟ ଉପରଲିଖିତ ପଥ୍ୟମାନ ରୋଗାନୁଯାୟୀ ପଥ୍ୟ କରାଇବ ।

ଅପଥ୍ୟ । ଚିକିତ୍ସକମାନେ ରୋଗୀର ପୀଡ଼ା ବଳ ଓ ଅବଳ ଜ୍ଞାତ ହୋଇ ଯେ ଯେ ରୋଗ ଏକତ୍ର ହୋଇଥାଏ ସେହି ସେହି ରୋଗୋକ୍ତ ଅପଥ୍ୟ ନିଷେଧ କରିବ ।

ବାତ-ପ୍ରକରଣ ।

ପଥ୍ୟ । ତୈଳାଭ୍ୟଙ୍ଗ ଅଭ୍ୟଙ୍ଗନ ଶମନଦ୍ରବ୍ୟ ସ୍ନିଗ୍ଧକାରକ ଦ୍ରବ୍ୟ ପୁଷ୍ଟିକର ଦ୍ରବ୍ୟ ସ୍ନିଗ୍ଧ ସ୍ୱେଦ ଅବସ୍ଥିତ ଶୟନ ଅଙ୍ଗମର୍ଦ୍ଦନ ବସ୍ତିକ୍ରିୟା ନସ୍ୟ ବସ୍ତ୍ରରେ ଶରୀର ଆବୃତ ବାୟୁ ପରିତ୍ୟାଗ ଅବଗାହନ ଓ ସ୍ନାନ ଶିରୋବସ୍ତି ଚନ୍ଦ୍ରାବର୍ଜ୍ଜନ ଖରାରେ ବସିବାର ବୃଷ୍ୟକ୍ଷୀକନାନ ବାୟୁପ୍ରଶମନ ତୈଳପୂର୍ଣ୍ଣ କୁଣ୍ଡରେ ସ୍ନାନ ଗାତ୍ରଲେପନ ମଦ୍ୟପାନ ଭୂମିଶଯ୍ୟା ସ୍ୱସ୍ତି-

ଶୀଳତା ଲବଣରସଯୁକ୍ତ ଦ୍ରବ୍ୟ ସ୍ୱାଦୁ ଅମ୍ଳରସ ମଜ୍ଜା ତେଲ ଚର୍ବୀ ଘିଅ ନୂତନ ଖାର କୁଲଥ୍ଥ ଖସା ଗହମ ମୁଗ ଘୋଲଦହି କଲମ୍ବ ଶାଳ ଓ ଷାଠିକାଧାନ ପେଯ୍ଧ କାଞ୍ଜି ଦୁଧ ଦୁଧଛେନା ମଣ୍ଡ ଅଳ୍ପ ଉଷ୍ଣଜଳ ଗୋରୁ-ମୂତ୍ର ନମ୍ବ ବସାଦହି ପଇଡ଼ ଯବଧାନ ଛେନା ମେରଗ ଗଣ୍ଡା ବରାହ ମଇଷି ବହୁଶୃଙ୍ଗ ମୃଗ ହସ୍ତୀ ଓଧ ପ୍ରଭୃତ ଅନୂପମାଂସ ଗୋରୁ ଘୋଡ଼ା ଓଟ ଗଧ ଛେଳ ପ୍ରଭୃତ ଗ୍ରାମ୍ୟମାଂସ ହଂସ କୁରଳ ଶରାଳ ହାଡ଼ଗିଲା ଚରଳ ବଗ କାଣ୍ଡୀବଗ ପ୍ରଭୃତ ଉଦକମାଂସ ଗୋଧି ବେଙ୍ଗ ଝିଙ୍କ ପ୍ରଭୃତ ବିଲେଶୟ୍ୟ ମାଂସ ମୟୂର କୁକୁଡ଼ା ତିତ୍ତିର ଲୁଲଙ୍ଗ ପ୍ରଭୃତ ଧନ୍ୱୋଭବ ମାଂସ କୁମ୍ଭୀର ତମିଙ୍ଗିଳ ମଗର କଅଁଳାଡ଼ କଇଁଛ ରୋହି-ମାଛ ବମି ମାଗୁର ଶିଳନ୍ଦ ଚେଙ୍ଗ ଶିଙ୍ଘି ଇଲ୍ଲିଶୀ ପୁଷ୍ଠୀ ଗାଗର ଭାକୁଡ଼ ଏ ସମସ୍ତ ମାଛ ଓ ସମସ୍ତ ଜଳଜନ୍ତୁ ବାଇଗଂଣ ପଟୋଳ ସଜନାଛୁଇଁ ରସୂଣ ଦ୍ରାକ୍ଷା ଆମ୍ବ ଆମଡ଼ା ଅଁଳା ଡାଳିମ୍ବ ଅମ୍ଳବେତ ବରକୋଳି କଇଥ ହରଡ଼ା ପାଚଲାତାଳ ଛତାଡ଼ିଖ ଗୋଖର ବଥୁଆଶାଗ ବେଗୁ-ନିଆ ସୁନାରି ପସାରୁଣୀ ପାଳଧୂଆ ତାମ୍ବୂଲ ନବାତ ସରଳକାଠ ବୋଳ ଶିଳାଜତୁ ଅଗୁରୁ ସରଳବୃକ୍ଷ ରସ ( ତାରପେଣି ) ଦେବଦାରୁ ଗୁଗ୍ଗୁଳୁ ଗଣ୍ଡିଅନା କୁଙ୍କୁମ ସ୍ନିଗ୍ଧବସ୍ତ୍ର ଉଷ୍ଣବସ୍ତ୍ର ସ୍ୱର୍ଣ୍ଣଭସ୍ମ ରୌପ୍ୟଭସ୍ମ ସୀସାଭସ୍ମ ମଲ୍ଲୀଫୁଲର ମାଳା ଏପର ତରୁଣୀ ଦୁଃଖରେ ଅଚଳା ସ୍ୱଖରେ ନାସ୍ତୁହା କୋଧାଦ୍ଧ ରହିତ ସ୍ଥିରବୁଦ୍ଧି ।

ଅପଥ୍ୟ । ଚଳ୍ତା ଉଜାଗର ଅତ୍ୟନ୍ତ ବାକ୍ୟକଥନ ରକ୍ତମୋକ୍ଷଣ ବମନ ଲଙ୍ଘନ ବ୍ୟାୟାମ ହସ୍ତି ଓ ଘୋଡ଼ାରେ ଗମନ ମଳ ଓ ମୂତ୍ରର ବେଗଧାରଣ ସ୍ତ୍ରୀସଙ୍ଗମ ଆଘାତ ଅପତର୍ପଣ ପତବାର ଧାତୁକ୍ଷୟ ଶୋକ ପଥଭ୍ରମଣ ବରୁଦ୍ଧଭୋଜନ ଭୋଜନଦ୍ରବ୍ୟ ପାକ ନୋହୁଣୁ ପୁନର୍ଭୋଜନ ଏମାନେ ଅପଥ୍ୟ ବୃଦ୍ଧାବସ୍ଥା ବର୍ଷାକାଳ ମେଘାଛନ୍ନ ଶେଷରାତ୍ର ସନ୍ଧ୍ୟା-

କାଲ ଭସ୍ମ ରୁକ୍ଷଦ୍ରବ୍ୟ ଅତଶଯ୍ୟ ଅମ୍ଳଦ୍ରବ୍ୟ କଷାୟଦ୍ରବ୍ୟ ତିକ୍ତଦ୍ରବ୍ୟ କଟୁଦ୍ରବ୍ୟ କ୍ଷାରଦ୍ରବ୍ୟ ଅତଶଯ୍ୟ ଶୀତଳଦ୍ରବ୍ୟ ବାଜୁଙ୍ଗାଧାନ କାଙ୍ଗୁ ବଣକୋଦୁଅ ମୁକୁନ୍ଦକ କୋଦୁଅ ଯବଧାନ ଶୁଆଁ ପ୍ରଭୃତି ତୃଣଧାନ ଶିମ୍ବ ଜାମୁ ମଠର ଚଣା ମୁଗ ଖୁଡଆଚଣା ମନ୍ଦୁରୀ ପଦ୍ମାଦ୍ଦର ମୂଳ ଗୁଆ ବିଲକେଶର ହରଡାଲ କଲରା କେନ୍ଦୁ କାଙ୍କଡ଼ ତାଳସଜ ତାଳଗଜା ନଦୀ ଓ ପୋଖରୀ ଜଳ କୁଆପଥର ବଠା ଖସାଦ୍ଦଦ୍ରବ୍ୟ ଶିଶିରଜଳ ଗଧଦୁଧ ପତ୍ରଶାଗ ଡହୁଡ଼ୀ ଚରାଇଡା ଗୁଡ଼କମାଇଁବୃକ୍ଷ ବାଂଶଗଜା ସମସ୍ତ ଶୁଷ୍କମାଂସ ମଦ୍ଧ ଧୂଆଁ ବଦ୍ଧବାୟୁ ଧୂଳ ପରାଭବ ଖଟଶଯ୍ୟା ।

## ପିତ୍ତ-ପ୍ରକରଣ ।

ପଥ୍ୟ । ଘୃତପାନ ବିରେଚନ ରକ୍ତମୋକ୍ଷଣ ଶ୍ୱେତ ଶାଳଧାନ ଗହମ ତୃଣଧାନ ବୁଟ ମୁଗ ମସୁର ଯବଧାନ ବାସିମଣ୍ଡ ଦୁଧ ପଇଡ଼ ଆଖୁ ମହୁ ଧନ୍ୱଦେଶଜ ମାଂସଯୂଷ ଘିଅ ନବାତ ଶୀତଳଜଳ ଉଦ୍ଭିଦଜଳ କାଙ୍କଡ଼ କଦଳୀ ପଣସ ବେତକନ୍ଦା ଅଷାଢ଼ୁଆ ଫଳ ଦ୍ରାକ୍ଷା କସିପଟୋଳ ବୁଢ଼ାପାଣିକଖାରୁ କାକୁଡ଼ି ଲାଉ ଘରପୋଡଅ ଲେଉଟିଆଶାଗ କଲରା ଡାଳିମ୍ବ ଅଁଳା ତାଳସଜ ହରଡ଼ା ଖଜୁରୀଫଳ ଓ କନ୍ଦା ଡୁମ୍ବୁର ମଧୁରତରଡ଼ା କଷାରସଯୁକ୍ତ ଦ୍ରବ୍ୟ ତିକ୍ତରସଯୁକ୍ତ ଦ୍ରବ୍ୟ ମଧୁରରସଯୁକ୍ତ ଦ୍ରବ୍ୟ ଯାଠିମଧୁ ଛତାଉରୀ କଂସା ଲୁହା ରୂପା ସୁନା କଟୁକୀ ନମ୍ବ ତହୁଡ଼ ଚନ୍ଦନ କୋଠାଗୃହ ଭୂମିଗୃହ ଶୀତଳପବନ ଧାରାଗୃହ ଚନ୍ଦ୍ରକିରଣ ନୂତନ କଦଳୀପତ୍ରରେ ଓ ପଦ୍ମପତ୍ରରେ ଶୟନ ଶୀତଳ ଲେପ ଭୂମିରେ ଶୟନ ମଣି ଧାରଣ ସନ୍ଧ୍ୟା ସମୟରେ ଗାୟକ ସ୍ତ୍ରୀ ଆଲିଙ୍ଗନ ସ୍ନାନ ବନ୍ଧୁ-ସମାଗମ ମଧୁରବାକ୍ୟ ଶ୍ରବଣ ରମଣୀୟତା ମନ୍ଦପବନ ସେବନ ଜଳସେ-ଚନ ବାଦ୍ୟଶ୍ରବଣ ଉତ୍କୃଷ୍ଟ ନୃତ୍ୟ ଦର୍ଶନ ନାଗେଶ୍ୱରପୁଷ୍ପ ନୀଳୋତ୍ପଳ ପାଟଳୀ ପଦ୍ମ ରକ୍ତକଇଁ ଫୁଲ କର୍ପୂର ପନୀରପାଣି ସମସ୍ତ ଶୀତଳ କ୍ରିୟା ।

ଅପଥ୍ୟ । ଧୂମଗ୍ରହଣ ସ୍ୱେଦ ଖରା ମୈଥୁନ ମଳ ଓ ମୂତ୍ରାଦିର ବେଗ-ଧାରଣ କ୍ରୋଧ ଷ୍ଟାରବିଶେଷ ପଥ ଭ୍ରମଣ ହସ୍ତୀ ଓ ଘୋଡ଼ାଦିରେ ଗ-ମନ ତୀକ୍ଷ୍ଣକର୍ମ ବ୍ୟାୟାମ ଭୁକ୍ତଦ୍ରବ୍ୟର ପରିପାକ କାଳ ଗ୍ରୀଷ୍ମକାଳ ବିରୁଦ୍ଧଭୋଜନ ମଧ୍ୟାହ୍ନକାଳ ଶରତ୍କାଳ ମଧ୍ୟରାତ୍ର ଯୌବନକାଳ ପିତ୍ତପ୍ର-କୋପକ ଅଟେ ତିଅଲଧାନ ବାଂଶଧାନ ଖସା ରସୁଣ ଖିର କୁଳଥ୍ଥ ଗୁଡ଼ ମଠର ମଦ ତୁଳସୀ କୂପଜଳ କାଞ୍ଜି ଗରମପାଣି ଜମ୍ବିଲ ଲେମ୍ବୁ ହିଙ୍ଗୁ ଜେଉଡ଼ି ମୂତ୍ରବର୍ଗ ଭାଲିଅ ତାମ୍ବୂଳ ଦହି ସୋରିଷ ବରକୋଳି ତେଲ-ଭଜିଣ ତିନ୍ତୁଳ କଟୁରସଯୁକ୍ତଦ୍ରବ୍ୟ ଅମ୍ଳରସଯୁକ୍ତଦ୍ରବ୍ୟ ଲବଣରସ-ଯୁକ୍ତଦ୍ରବ୍ୟ ବିଦାହିଦ୍ରବ୍ୟ ।

## କଫପ୍ରକୋପଣେ ।

ପଥ୍ୟ । ବମନ ଉପବାସ ନେତ୍ରାଞ୍ଜନ ସ୍ତ୍ରୀସଙ୍ଗମ ଶରୀରମାର୍ଜନ ସ୍ୱେଦ ଚିନ୍ତା ଜାଗର ପରିଶ୍ରମ ଅତ୍ୟନ୍ତ ପଥଭ୍ରମଣ ତୃଷା ବେଗଧାରଣ ଗଣ୍ଡୂଷଧାରଣ ପ୍ରତିସାରଣ ପ୍ରଧମନ ହସ୍ତୀ ଘୋଡ଼ାଦିରେ ଗମନ ଧୂମଗ୍ରହଣ ଶରୀରରେ ଲୁଗା ଘୋଡାହେବାର ଯୁକ୍ତ ଅତ୍ୟନ୍ତ ଦୁଃଖଜନକ ନସ୍ୟଗ୍ରହଣ ଭୟଜନକ ରୁକ୍ଷଦ୍ରବ୍ୟ ଉଷ୍ଣଦ୍ରବ୍ୟ ପୁରୁଣାଶାଳ ଓ ଷାଠିକାଧାନ ମଠର ତୃଣଧାନ ଚଣା ମୁଗ କୁଳଥ୍ଥ ଯବଧାନ କ୍ଷାରପ୍ରୟୋଗ ସୋରିଷତେଲ ଗରମଜଳ ଧନ୍ୱଦେଶଜ ମାଂସ ଶ୍ୱେତସୋରିଷ ବେତକନା ପଟୋଳ-କଲରା ବାଇଗଣ ଉଡୁମ୍ବର କାଙ୍କଡ଼ ରସୁଣ କଦଳୀଭଣ୍ଡା ଗଞ୍ଜେ ଓଲୁଅ ନିମ୍ବ ମୂଳା ପୋଇଶାଗ ବରୁଣବୃକ୍ଷ କଟୁକୀ ତିକ୍ତୁଡ ମନ୍ଥ ତାମ୍ବୂଳ ମହାନିମ୍ବ ପୁରୁଣାମଦ ତ୍ରିକଟୁ ତ୍ରିଫଳା ଗୋରୁମୂତ୍ର ଖଇ ଭଜାଗହଳର ଅନ୍ନ ଅଳ୍ପଉଷ୍ଣ ଗୁଡ କଂସା ଲୁହା ନେତ୍ରାଞ୍ଜନ ମୁକ୍ତା କଟୁରସଯୁକ୍ତଦ୍ରବ୍ୟ ତିକ୍ତରସଯୁକ୍ତଦ୍ରବ୍ୟ କଷାରସଯୁକ୍ତଦ୍ରବ୍ୟ ।

ଅପଥ୍ୟ । ସ୍ନେହପ୍ରୟୋଗ ତୈଳାଭ୍ୟଙ୍ଗ ଉପବେଶନ ଦିବସନିଦ୍ରା

ସ୍ନାନ ବିରୂକ୍ଷଦ୍ରବ୍ୟ ଅନ୍ନ ଶିଶିରକାଳରେ ପ୍ରାତଃକାଳର ପାଞ୍ଚଘଡ଼ି ପର୍ଯ୍ୟନ୍ତ ବସନ୍ତ କାଳରେ ରାତ୍ର ଅର୍ଦ୍ଧଭାଗ ପାଞ୍ଚଘଡ଼ି ପର୍ଯ୍ୟନ୍ତ ଓ ବାଳକଅବସ୍ଥା ଷୋଡ଼ଶବର୍ଷ ପର୍ଯ୍ୟନ୍ତ କଫର କାଳ ଭୋଜନ ଆଦ୍ୟରେ ଜଳପାନ ଖାଉ ନୂତନଧାନର ଅନ୍ନ ମାଛ ମାଂସ ଗୁଡ଼ାଦି ଛେନାପ୍ରଭୃତି ଡାଲଗଞ୍ଜା ତରଲଦ୍ରବ୍ୟ ପେୟ୍ଯ କରମଙ୍ଗା ପୋଇଶାଗ ପଣସ ଛତୁ ଅଖାଡୁଆ ଫଳ ଖଜୁରୀ ଲେପ ପଲଙ୍କ ଦୁଧ କ୍ଷୀର ମଧୁରରସଯୁକ୍ତ ଦ୍ରବ୍ୟ ଅମ୍ଳରସଯୁକ୍ତ ଦ୍ରବ୍ୟ ଲବଣ ଦ୍ରବ୍ୟ ଗୁରୁଦ୍ରବ୍ୟ ହିମ ସନ୍ତର୍ପଣ କ୍ରିୟା ।

ଗ୍ରୀଷ୍ମ ପ୍ରକରଣ ।

ପଥ୍ୟ ।— କୁନ୍ଦଫୁଲ ଶୁକ୍ଳ ଶାଳିଧାନ କଳାମୁଗ ପୁରୁଣା ଯବଧାନ ଅଦ୍ଭୁତ ଜାଙ୍ଗଲକ ମୃଗ ଓ ପକ୍ଷୀମାନଙ୍କ ମାଂସଯୂଷ ରସାଳା ନିର୍ମଳପାନୀୟ ସ୍ୱର୍ଗ ଖାଡ଼ବ ଛତୁଆ ନବାତପଣା ଚନ୍ଦ୍ରକିରଣ ଗୋରୁଦୁଗ୍ଧ ଦୃତଶଶାଙ୍କ-କିରଣ ନବାତମିଶ୍ରିତ ଗୋଦୁଗ୍ଧ ବା ମହିଷିଦୁଗ୍ଧ ଘିଅ ନବାତ ଜଳମିଶ୍ରିତ ମଦ୍ୟ କାଞ୍ଜି ପାଚିଲାକଦଳୀ ଦ୍ରାକ୍ଷା ପଣସ ଆମ୍ବ ସ୍ୱାଦୁପଦାର୍ଥ ଲଘୁ-ଦ୍ରବ୍ୟ ଦ୍ରବଦ୍ରବ୍ୟ ଶୀତଳଦ୍ରବ୍ୟ ସ୍ନିଗ୍ଧଦ୍ରବ୍ୟ ପାଟଳୀଫୁଲ ବାସିପାଣି ଲଘୁ ଓ ନିର୍ମଳ ଶୀତଳଜଳ ନୂତନ ପତ୍ର ପୁଷ୍ପମାନଙ୍କରେ ଆବୃତ ବୃକ୍ଷମାନ ଅତ୍ୟନ୍ତ ଆମୋଦଜନକ ସୂର୍ଯ୍ୟକିରଣ ରହିତ ଓ ହିଂସ୍ରକଜନ୍ତୁ ରହିତ ଭ୍ରମରପ୍ରଭୃତିର ଶ୍ରବଣସୁଖକର ସୁମଧୁରଧ୍ୱନି ବହିଷ୍କୃତରମଣୀୟ-ସନ୍ତାପରହିତ ଅରଣ୍ୟରେ ଅଥବା ନଦୀତୀରରେ ଶୀତଳ ବାଲୁକାମୟ ତଟ-ରେ ଗୃହପ୍ରସ୍ତୁତ କରି ସୁଗନ୍ଧ ଚନ୍ଦନମିଶ୍ରିତ ଜଳସିକ୍ତ ଚନ୍ଦ୍ରାତପରେ (ଚାନ୍ଦୁଆ) ଆଚ୍ଛାଦିତ କରି ତଦଭ୍ୟନ୍ତରେ ପଦ୍ମ ଓ କଇଁପ୍ରଭୃତି ପତ୍ର ଓ ପୁଷ୍ପରେ ଲତାମଣ୍ଡପ ପ୍ରସ୍ତୁତ କରି ମଧ୍ୟାହ୍ନକାଳରେ ଶୟନ କରିବ ଅଥବା ସଚ୍ଛିଦ୍ର ଜଳଧାରରେ ଚତୁର୍ଦ୍ଦିଗ ଜଳସ୍ରାବ ହେଉଥିବ ଏମନ୍ତ ଗୃହରେ ଅଥବା ଧାରାଗୃହରେ ଅବସ୍ଥାନ କରି କାମିନୀମାନଙ୍କ

ସହିତରେ ଅଥବା ସମାନବୟସ ମିତ୍ରମାନଙ୍କ ସହିତରେ ଜଳକ୍ରୀଡ଼ା କରିବ ରାତ୍ରରେ ପବନ ବୋହୁଥିବାସ୍ଥାନ ଚନ୍ଦ୍ରକିରଣ ପଡ଼ିଥିବା ଏମନ୍ତ ଚୂନଅଗଣାରେ ନିଦ୍ରା କରିବ ସରୁଲୁଗା ପରିଧାନ ମୃଣାଳବଳୟ ଧାରଣ କର୍ପୂରମିଶ୍ରିତ ଚନ୍ଦନ ଲେପନ ରତ୍ନଆଭରଣ ଶୀତଳପତ୍ର ବିଚ-ଣାର ପବନ ଜଳମିଶ୍ରିତ ପବନ କର୍ପୂରବାସିତ ନିର୍ମଳଜଳ ମୁକ୍ତାହାର ମଲ୍ଲୀଫୁଲମାଳା ପଦ୍ମରଦନ ଅନ୍ତରରେ ସ୍ତ୍ରୀସଙ୍ଗମ ସ୍ନାନ ଦିବସନିଦ୍ରା ଶୁଆ ସାରୀ ଓ ଭୃଙ୍ଗମାନଙ୍କର ମଧୁରଧ୍ୱନି ମନୋହରଗାନ ଶ୍ରବଣ ।

ଅପଥ୍ୟ ।— ବ୍ୟାୟାମ ଖରା କଟୁଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣରସଯୁକ୍ତ ଦ୍ରବ୍ୟ ସ୍ତ୍ରୀସଙ୍ଗମ ଉଷ୍ଣଦ୍ରବ୍ୟ ରୁକ୍ଷଦ୍ରବ୍ୟ ।

## ବର୍ଷା-ପ୍ରକରଣ ।

ପଥ୍ୟ ।— ବମନ ବିରେଚନ ଆସ୍ଥାପନ ପୁରୁଣାଶାଳିଧାନ ଧନ୍ୱ-ଦେଶଜ ମାଂସ ପୁରୁଣାଗହମ ଓ ଲଘୁଧାନ ମାଂସଯୂଷ ପୁରୁଣାମନ୍ଥ ମୁଗାଦିଯୂଷ ଅଗ୍ନିକରଦ୍ରବ୍ୟ ତରଳଦ୍ରବ୍ୟକୃତ ସାମଗ୍ରୀ ବାତପିତ୍ତ ଓ କଫକୁ ସମାନରଖିବା ଦ୍ରବ୍ୟ ସ୍ନିଗ୍ଧଦ୍ରବ୍ୟ ଉଷ୍ଣଦ୍ରବ୍ୟ ମଧୁମିଶ୍ରିତ ଲଘୁ-ଦ୍ରବ୍ୟ ଦହିସର ସୌବର୍ଚ୍ଚଳ ଲବଣ ଆକାଶଜଳ ପୁଷ୍କରଣୀଜଳ କୂପ-ଜଳ ଲବଣରସଯୁକ୍ତ ଦ୍ରବ୍ୟ ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ସରୁଲୁଗା ଧୂପ ଚନ୍ଦନ ପୁଷ୍ପମାଳା କୋଠାଘରରେ ବାସ ଶୁଖିଲାଭୂମିରେ ବାସ ଦୋ-ତାଲାଘରରେ ବାସ ଓ ଶୟନ ଜଳକଣାରହିତ ଉଷ୍ଣତା ଗୃହରେ ଶୟନ ଗାଡ଼ି ଓ ପାଲିଙ୍କିରେ ଗମନାଗମନ ।

ଅପଥ୍ୟ ।— ବ୍ୟାୟାମ ଖରା ଜଳସଂଯୋଗ ଦିଅଛିରୁଆ ନଦୀଜଳ ହିମ ଦିବସନିଦ୍ରା ମୈଥୁନ ଶୀତଳପବନ ଶୀତଳଦ୍ରବ୍ୟସଂଯୁକ୍ତ ସାମଗ୍ରୀ ରୁକ୍ଷ ଓ ତୀକ୍ଷ୍ଣ ଦ୍ରବ୍ୟ ।

## ଶରତ୍ ପ୍ରକରଣ ।

ପଥ୍ୟ ।— ନଦୀଜଳ ଘିଅରେ ବିରେଚନ ରକ୍ତମୋକ୍ଷଣ ଶ୍ୱେତ-ଶାଳିଧାନ ଗହମ ମରୁଭୂମିଜାତ ମୃଗ ଓ ପକ୍ଷୀମାନଙ୍କ ମାଂସ ମୁଗ ଯବ-ଧାନ ଷାଡ଼ବ ସଫାମାଂସରସ ମହୁ ଦୁଧ ଘିଅ ଅଁଳା ପଟୋଳ ନବାତ ଲଘୁଦ୍ରବ୍ୟ କଷାୟଦ୍ରବ୍ୟ ତିକ୍ତଦ୍ରବ୍ୟ ମଧୁରଦ୍ରବ୍ୟ ପିତ୍ତହରଦ୍ରବ୍ୟ ଆଖୁ କର୍ପୂର ପୋଖରୀଜଳ ହିମଜଳ ହଂସୋଦକ ଚନ୍ଦନ ସୁନ୍ଦର ଚନ୍ଦ୍ର-କିରଣରେ ଧବଳୀକୃତ ଗୃହ ସରୁଲୁଗା ସୁଗନ୍ଧ ପୁଷ୍ପମାଳା ମୁକ୍ତାହାର ବୃକ୍ଷକ୍ରିୟା ଶୀତଳକ୍ରିୟା ଗୀତଶ୍ରବଣ ନୃତ୍ୟଦର୍ଶନ ।

ଅପଥ୍ୟ ।— ବିଶେଷ ଭୋଜନ ଦହି ତେଲ ଖରା ପୂର୍ବଦିଗର ପବନ କାଞ୍ଜି ମଦ କୂପଜଳ ଚର୍ବି ହିମ କ୍ଷାର କ୍ଷୀର ଖେସା ଅନୂପଦେ-ଶଜ ମାଂସ ଉଦକମାଂସ ଦିବସନିଦ୍ରା ଉଷ୍ଣଦ୍ରବ୍ୟ ରୂକ୍ଷଦ୍ରବ୍ୟ ।

## ହେମନ୍ତ ଓ ଶିଶିରପ୍ରକରଣ ।

ପଥ୍ୟ । ସୁଗନ୍ଧଯୁକ୍ତ ବାତନାଶକ ତେଲ ଦେହରେ ମର୍ଦ୍ଦନ ଓ ମୁଣ୍ଡରେ ବେଶି ମର୍ଦ୍ଦନ କୁସ୍ତି ବା ବାହୁଯୁଦ୍ଧ ପାଦେ ପାଦେ କଷାକଷି କରିବ ସ୍ନାନ କରି ରେଶମି ଲୁଗା ପିନ୍ଧିବ ଅଗରଚନ୍ଦନ ଧୂପ କୁଙ୍କୁମ ମଞ୍ଜିଳିକର ସୁଗନ୍ଧିଦ୍ରବ୍ୟ ଶରୀରରେ ଲେପନ ନୂଆ ଧାନର ଅନ୍ନ ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣରସଯୁକ୍ତ ଦ୍ରବ୍ୟ କ୍ଷୀରବିରି ପୁଳି ଆଦି ପିଠା ଗହମର ପ୍ରସ୍ତୁତ ପୁରି ଆଦି ଗୁଡ଼ାଦି ଛେନାଦି ମଦ ତେଲ ଚର୍ବି ଅନୂପମାଂସ ବିଲେଶୟ ମାଂସ ପ୍ରସହା ମାଂସ ଗ୍ରାମ୍ୟମାଂସ ଉଦକମାଂସ ସ୍ନିଗ୍ଧଦ୍ରବ୍ୟ ଉଷ୍ଣଦ୍ରବ୍ୟ ଭୋଜନ ସୂର୍ଯ୍ୟକିରଣ ସେବା ବାଯୁଆଣିଦ୍ୱାରା ସ୍ୱେଦ ଅଳ୍ପ ଉଷ୍ଣଜଳ ସର୍ବଦା ଗମନକାଳରେ ପାଦରେ ଜୋତା ରାତ୍ରରେ ଭକ୍ଷଣ ଅଳ୍ପ ଉଷ୍ଣ ମହିଷର ତୁଳା ବିଛଣାରେ ଯୌବନ ମଦ-ଗର୍ବିତା ରସିକା ପ୍ରିୟତମା କାମିନୀ ସହିତରେ ଶୟନ ଓ ଶୃଙ୍ଗାରକ୍ରୀଡ଼ା ।

ଅପଥ୍ୟ । ହିମ ଉଦମନ୍ଥ ପୂର୍ବଦିଗର ପବନ ପ୍ରମିତାଶନ କଷାୟଦ୍ରବ୍ୟ କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ ଲଘୁଦ୍ରବ୍ୟ ବାୟୁବର୍ଦ୍ଧକଦ୍ରବ୍ୟ ଶୀତ ଗୁଣ ସଂଯୁକ୍ତ ରୁକ୍ଷଦ୍ରବ୍ୟ ଅସାତ୍ମ୍ୟଦ୍ରବ୍ୟ ।

## ବସନ୍ତ--ପ୍ରକରଣ ।

ପଥ୍ୟ । ବମନ ଲଙ୍ଘନ ନେତ୍ରାଞ୍ଜନ ପ୍ରଧମନ ବ୍ୟାୟାମ ଶରୀରମର୍ଦ୍ଦନ ଗଣ୍ଡୂଷ ଧାରଣ ପ୍ରତିସାରଣ କବଳଗ୍ରହଣ ହାତୀ ଓ ଘୋଡ଼ାଦି ଯାନରେ ଗମନାଗମନ ପରିଶ୍ରମ ପାଦାଘାତ ଏମ୍ନାନ କଲାପରେ ସ୍ନାନ କରିବ ଚନ୍ଦନ କୁଙ୍କୁମ ଅଗୁରୁ କର୍ପୂରଲେପ ସ୍ତ୍ରୀସହିତରେ ସହବାସ ପୁରୁଣା ଗହମ ଯବଧାନ ଶାଳଧାନ ପୁରୁଣା ଘିଅ ଜାଙ୍ଗଲଜ ମାଂସ ବର୍ଷାପାଣି ପୁଷ୍କରିଣୀଜଳ ମହୁ ମିଶ୍ରିତ ଜଳ ଶୁଣ୍ଠି ସିଝା ପାଣି ମହୁ ଗରମଜଳ କଟୁଦ୍ରବ୍ୟ ତିକ୍ତଦ୍ରବ୍ୟ କଷାୟଦ୍ରବ୍ୟ ରୁକ୍ଷକ୍ରିୟା ଉଷ୍ଣକ୍ରିୟା ପ୍ରେୟସୀ ଅଥବା ସମାନବୟସା ସ୍ତ୍ରୀମାନଙ୍କ ସହିତ ଆନନ୍ଦାଲାପ ମଦ ବର୍ଜ୍ଜିତ ସର୍ବଦା ଖେଳ ଆନନ୍ଦୋତ୍ସବ ନୂଆ ରକ୍ତବର୍ଣ୍ଣ ପତ୍ର ଶୋଭା ଘ୍ରାଣାମୋଦ ଜନକ ମନୋହର ପୁଷ୍ପରେ ଉନ୍ମତ୍ତ ଭ୍ରମର ସ୍ୱର କୋକିଳମାନଙ୍କର ପଞ୍ଚସ୍ୱର ମଦନାନଳ ବର୍ଦ୍ଧକ ପରିପୂର ଆଲିଙ୍ଗିତ ବୃକ୍ଷ ସମୂହର ଶାଖା ପତ୍ରରେ ଆଚ୍ଛାଦିତ ସୂର୍ଯ୍ୟଙ୍କର ତେଜ ରହିତ ବଡ଼ ଉଚ୍ଚ ସୁନ୍ଦରଗୃହ ସୁଗନ୍ଧ ପୁଷ୍ପମାନଙ୍କର ପରାଗ ସର୍ବଦା ପବନରେ ଉଡ଼ୁଥାଏ ଏବଂ ସ୍ରୋତସ୍ୱତୀ ନଦୀ ସକଳ ଜନ୍ତୁମାନଙ୍କର ତୃପ୍ତିକର ବିରହୀମାନଙ୍କର ଅନ୍ତରାଗ୍ନି ପ୍ରଦୀପକ ସାଧାରଣଙ୍କର ଶାନ୍ତିଜନକ ଆନନ୍ଦକର ସର୍ବଦା ଦକ୍ଷିଣ ପବନରେ ଆଲିଙ୍ଗିତ ଏପରି ଅରଣ୍ୟରେ ମିତ୍ରଜନମାନଙ୍କ ସହିତ ବିଚିତ୍ର ପ୍ରିୟାଲାପରେ ବସନ୍ତଋତୁ ମଧ୍ୟାହ୍ନକାଳ ଅତି ବାହିତ କରିବ ।

ଅପଥ୍ୟ । ମଧୁରଦ୍ରବ୍ୟ ଅମ୍ଳଦ୍ରବ୍ୟ ଲବଣରସଯୁକ୍ତ ଦ୍ରବ୍ୟ ସ୍ନିଗ୍ଧଦ୍ରବ୍ୟ ଶୀତଳଦ୍ରବ୍ୟ ଓ ଗୁରୁଦ୍ରବ୍ୟ ଭୋଜନ ଦିବସ ନିଦ୍ରା ।

ଦୋଷାନୁସାରେ ବିବେଚନା କରି ଏକଦୋଷ ଦ୍ୱିଦୋଷ ଓ ତ୍ରିଦୋଷଜନିତ ଜ୍ୱରାଦି ରୋଗମାନଙ୍କରେ ପୂର୍ବୋକ୍ତ ପଥ୍ୟାପଥ୍ୟ ବିଭାଗାନୁସାରେ ବାତରୋଗରେ ବାତନାଶକ ପିତ୍ତରୋଗରେ ପିତ୍ତନାଶକ କଫଜରେ କଫନାଶକ ଦ୍ୱିଦୋଷଜରେ ଦ୍ୱିଦୋଷନାଶକ ତ୍ରିଦୋଷଜରେ ତ୍ରିଦୋଷନାଶକ ପଥ୍ୟ ପ୍ରୟୋଗ କରିବ ଅପଥ୍ୟ ବିଷୟରେ ଯାହା ଯାହା ପ୍ରତି ରୋଗରେ ଲେଖାଅଛି ତାହା ବିବେଚନା କରି ତ୍ୟାଗ କରିବ । ଇତି ପଥ୍ୟାପଥ୍ୟ ନିର୍ଣ୍ଣୟଂ ॥

ସମାପ୍ତୋଽୟଂ ଗ୍ରନ୍ଥଃ ॥



## କଠିଣ ଶବ୍ଦମାନଙ୍କର ଅର୍ଥ ।

ଅଧ୍ୟଶନ—ଭୋଜନ ପଦାର୍ଥ ପାକ ନୋହୁଣୁ ତା ଉପରେ ଭୋଜନ

ଅନୁବାସନ—ମଳଦ୍ୱାରରେ ପିଚକାରୀ ଦେବାର ।

ଅପତର୍ପଣ—ଉପବାସ ।

ଅବଗାହନ—ନଦୀ ବା ପୁଷ୍କରଣୀରେ ସ୍ନାନକରିବାର ।

ଅଭିଘାତ—ଉଚ୍ଚସ୍ଥାନରୁ ପଡିବାର ଅଥବା କାଷ୍ଠାଦିରେ ଆଘାତ ।

ଅଭ୍ୟଙ୍ଗ—ତୈଳାଦି ମର୍ଦ୍ଦନ ।

ଅମ୍ଳବର୍ଗ—ଡାଳିମ୍ବ, ଅଁଫୃଳା, ଟେଭା, ଆମ୍ବଡ଼ା, କଇଥ, ଲଘାକରଞ୍ଜ, ବରକୋଳି, ଚକ୍କଲଟା, ତନ୍ତୁଳୀ, କଞ୍ଚାଆମ୍ବ, କରମଙ୍ଗା, ଲେମ୍ବୁଥିଆ ଆତ, ବେତକୋଳି, କେଉଟ, ଅମ୍ଳବେତ, ଜମ୍ବୀର, ଦହି, ତକ୍ର, ମଦ, ଶୁକ୍ର, ଭୁଷୋଦକ, ଧନ୍ୟାମ୍ଳ, ଅମ୍ଳି ଭିଆଦି ।

ଅଶ୍ୱତର—ଗର୍ଦ୍ଦଭୀଗର୍ଭରୁଜାତ ଘୋଡ଼ା, ବା ଘୋଡ଼ୀ ଗର୍ଭରୁ ଜାତ ଗଧ ।

ଅଶ୍ରୁ—ଚକ୍ଷୁର ଜଳ ।

ଅନୂପଦେଶ—ପାହାଡ଼ ଜଙ୍ଗଲାଦି ଅରଣ୍ୟ ଏପରଜଳ ଓ ତଟାଦିଦେଶ ।

ଅନ୍ତରୀକ୍ଷଜଳ—ବର୍ଷାପାଣି, କୁଆପଥର ପାଣି, ହେମ, କାକର ।

ଉଦକମାଂସ—ଯେମାନେ ଜଳରେ ବାସକରନ୍ତି ମାଛ ଓ କୁମ୍ଭୀରାଦି ।

କଞ୍ଚଟ—ଜଳଜଶାଗ ।

କନ୍ଦଶାଗ—ଆଳୁ, ସାରୁ ଓ ଓଲୁଅ ପ୍ରଭୃତି ।

କବଳଗ୍ରହ—ପାଟିକଳରେ ପୂରାଇ ରଖିବାର ।

କଷାୟବର୍ଗ—ହରଡ଼ା, ବାହାଡ଼ା, ଶିଶୁଷ, ଖଇର, ଯାଠିମଧୁ, କଦମ୍ବ, ଉଦୁମ୍ବର, ମୁକ୍ତା, ପୋହଳା, କୁରୁବେଲ, ଗେରୁମାଟି, କସିବେଲ, ଖଜୁରୀ, ପଦ୍ମନାଡ଼, ନୀଳୋତ୍ପଳ ପ୍ରଭୃତି ।

କାମ୍ଳିକ—ଦହି, କାଞ୍ଜି, ଏ ଅମ୍ଳିଲରେ ଯେ ଖାଉଥିବ ଯୂଷ ହୁଏ ।

ଖଲାଟ—ଦୁଧଛେନା ।

କୌମୁଦ୍ଦବ—ଦଶବର୍ଷରୁ ଊର୍ଦ୍ଧ୍ୱ ପୁରୁଣାଘିଅ ।

ଖଡ଼୍ଗଯୂଷ – ତକ୍ରରେ ଖାଉଥିବ ସିଦ୍ଧକଲେ ଯେ ରସ ବାହାର ହୁଏ ତାହାର ନାମ ଏପର କଇଥ, ଅମ୍ଳିତ, ମରିଚ, ଜିରା, ଚିଢାମୂଳ ଏ ସମସ୍ତ ଏକତ୍ରେ ପାକକଲେ ଯେ ରସ ବାହାର ହୁଏ ତା ନାମ।

ଗୁଳ୍ଫ—ଗୋଡ଼ ଗୋଣ୍ଠିର ଉପରିଭାଗ ।

ଗ୍ରାମ୍ୟମାଂସ—ଯେ ଜନ୍ତୁ ଗ୍ରାମରେ ରହନ୍ତି ଛେଳି ମେଣ୍ଢା ଆଦ ।

ଜାଙ୍ଗଲଦେଶ—ଯେ ଦେଶରେ ପର୍ବତ ନଦୀ ପୁଷ୍କଣୀ ଓ ବୃକ୍ଷାଦ ଅଳ୍ପମାତ୍ର ଥାଏ ।

ଜୀବନ୍ତୀ—ଗୁଳୁଚ ।

ତକ୍ର – ବେସିଦ୍ଧଜଳର ଖଟା ଗୋଳଦହି ।

ତର୍ପଣ—ସ୍ନେହାଦ ଶସ୍ତ୍ରରେ ପୂଜବାହାର କରିବାର ।

ତିକ୍ତବର୍ଗ—ପଟୋଳ, ବାଡ଼ିଅଁଳା, କୁରୁବେଲ, ବେଣାଚେର, ରକ୍ତଚନ୍ଦନ, ଚିରାଇତା ।

ତ୍ରିଫଳା—ହରଡ଼ା, ବାହାଡ଼ା, ଅଁଳା ।

ଦଧିକୂଶରା—ଦହିଛେତଡ଼ି ।

ଦୋଷ—ବାତ ପିତ୍ତ କଫ ।

ଧନ୍ୱଦେଶ—ମରୁଭୂମି ଜାଙ୍ଗଲଦେଶ ଏ ଉଭୟମିଳିତ ଦେଶର ନାମ

ଧାରାଗୃହ—ଗୃହରେ ଜଳପୂର୍ଣ୍ଣ କରି ତା ଉପରେ ପଲଙ୍କ ପକାଇ ଶୋଇବାର ଏପର ଚତୁର୍ଦ୍ଦିଗରୁ କ୍ଷୁଦ୍ରଜଳ ପଡୁଥିବା ଗୃହ ।

ଧାରୋଷ୍ଣଦୁଗ୍ଧ—ଦୁଧ ଦୋହନ କଲାପର ଯେତେବେଳ ଯାଏ ଉଷ୍ଣ ଥାଏ ।

ନିଦାନ—ଯେ ଆହାର ବିହାରରୁ ରୋଗ ଜନ୍ମେ ତାହା ନାମ ।

ପରିସେଚନ—ଦେହକୁ ବା ମୁହଁକୁ ପାଣି ଛିଞ୍ଚିବାର ।

ପିଣ୍ୟାକ—ସୋରିଷଆଦି ବଟାଦ୍ରବ୍ୟ ।

ପେୟା—ଚାଉଳ ଏଗାରଗୁଣ ଜଳଦେଇ ସିଦ୍ଧକଲେ ଯେ ଦ୍ରବ୍ୟ ପ୍ରସ୍ତୁତ ହୁଏ ତାହା ନାମ ।

ପ୍ରସାରଣ—ମେଲିବାର ।

ବମନ—ବାନ୍ତିକରିବାର ।

ବସା—ଚର୍ବ୍ବି ।

ବସ୍ତିକ୍ରିୟା—ବୁଢାଆଙ୍ଗୁଠି ମୋଟରେ ନଳାରେ ବର୍ତ୍ତି କରି ଘିଅ ତେଲ ମଳଦ୍ୱାରରେ ପୂରାଇବାର ।

ବାରୁଣୀମଦ—ବକଯନ୍ତ୍ରରେ ଯେ ମଦ ବାହାରେ ସରାପ ବରାଣ୍ଡି ।

ବିଦାହିଦ୍ରବ୍ୟ—ଯେ ଦ୍ରବ୍ୟ ଖାଇଲେ ଅମ୍ଳ ଉଦ୍ଗାର ତୃଷା ଓ ଦାହ ଉତ୍ପନ୍ନ ହୁଏ ।

ବିନ୍ଧ୍ୟଗିରି—ଯେ ପର୍ବ୍ବତପଶ୍ଚିମରୁ ବ୍ୟାପ୍ତହୋଇ ଭାରତବର୍ଷକୁ ଦୁଇଭାଗକରିଅଛି ।

ବିରୁଦ୍ଧକାର୍ଯ୍ୟ—ପାପକର୍ମ ପରସ୍ତ୍ରୀସଙ୍ଗମ ଗୁରୁଜନାଦିଙ୍କୁ ଅପମାନ ଓ ପରଧନ ହରଣାଦି ।

ବିରୁଦ୍ଧପାନୀୟ—ଗୋଳିଆ ଦୁର୍ଗନ୍ଧପଦ୍ମନାଳୀ ତୃଣାଦି ଆବୃତଜଳ ଓ ବଢିପାଣି ।

ବିରୁଦ୍ଧଭୋଜନ—ବାସି ବହୁଦିନରଖାଳ ଓ ପିଠା ଦୁଧ ମାଛ ଏକତ୍ରରେ ଭୋଜନ ଭୋଜନପରେ ଭୋଜନ ।

ବିରେଚନ—ଝାଡାକରାଇବାର ମଳରେଚନ ।

ବିଲେପୀ—ଚାଉଳର ନଗୁଣ ଜଳ ଦେଇ ସିଦ୍ଧ କଲେ ଯେ ଦ୍ରବ୍ୟ ।

ବିଷ୍ଟମ୍ଭିଦ୍ରବ୍ୟ—ଯେ ପଦାର୍ଥ ଖାଇଲେ ପେଟରେ ଗୋଳ୍ପକାର ହୋଇଁ ଜମେ ଯେପରି ଅନ୍ନ ଅଦ ।

ବେଶବାର – ମାଂସକୁ ଶ୍ଳେଷ୍ମଶ୍ଳେଷ୍ମକର ମରିଚ ଓ ଘିଅରେ ପାକକଲେ ତାହାମ ।

ବ୍ୟାୟାମ—ଦଣ୍ଡକୁସ୍ତିଆଦ ଓ ମାଲସାଧନା ।

ମଜ୍ଜା—ଅସ୍ଥିମଧ୍ୟର ସାର ପଦାର୍ଥ ।

ମଧୁରରସ—ଅଖୁ ପାଚଲ୍ପପଣସ ଗୁଡ଼ଆଦ ସମସ୍ତ ମଧୁରଦ୍ରବ୍ୟ ।

ମଣ୍ଡ—ଚାଉଳର ଚଉଦଶଗୁଣ ଜଳ ଦ୍ୱାରା ସିଦ୍ଧଦ୍ରବ୍ୟ ।

ରସାଳା—ଡାଲଚେନି ଅଳାଇଚ ତେଜପତ୍ର ନାଗେଶ୍ୱର କଲାଜିରା ଗୁଡ ଅଦା ଶୁଣ୍ଠି ଦହି ଏମାନଙ୍କୁ ଏକତ୍ରରେ ଚକଟି ଛାଣିମ ଯେ ରସ ବାହାର ହୁଏ ତାହାମ ।

ରାଗ—ନବାତ ଠଭ୍ରା ସୈନ୍ଧବ ଭନୂଲୀ ପାରସାକୋଲୀ ଜାମ୍ବୁକୋଲୀ ସୋରଷ ଏମାନଙ୍କୁ ଏକତ୍ର କଲେ ଯେ ପଦାର୍ଥ ତାହାମ ।

ଲେହ—ଖରାରେ ମାଂସ ଶୁଷ୍କକର ଚୂର୍ଣ୍ଣ କଲ୍ପପର ଯେ ଶୁପକ୍ୱ ହେଲେ ତାହାମ ।

ବିଳେଶୟ—ଯେଉଁମାନେ ଗାତମଧ୍ୟରେ ବାସ କରନ୍ତି ନେଉଳ ଓ ସର୍ପାଦ ।

ଶଜାରୁ—ଝିଙ୍କପକ୍ଷୀ ।

ଶମନ—ସାତପ୍ରକାର, ଯଥା—ପାଚକ ଦୀପନ କ୍ଷୁଧା ତୃଷା ବ୍ୟାୟାମ ଖରା ଓ ପବନ ଏମାନଙ୍କରେ ରୋଗ ସମାନ ରହିଲେ ତାହାମ ।

ଷଷ୍ଠିଧାନ୍ୟ—ଯେ ଧାନ ବସନ୍ତକାଳରେ ଉତ୍ପନ୍ନ ହୁଏ ଦାଲୁଅ ।

ଶଶାଙ୍କକରଣ—ଚାଉଳଆଦରେ ବରା କର ପୁଣି ତାକୁ ଚୂର୍ଣ୍ଣ କର ନବାତ କର୍ପୂର ମିଶାଇଁ ଲଡୁକଲେ ତାହାମ ।

ଶ୍ରଦ୍ଧା—ବ୍ରତାଦ ଉପବାସ ।

ଶିରାବେଧ—ଶସ୍ତ୍ର ବା କୁମ୍ଭରେ ରକ୍ତ ବାହାର କରିବାର ।

ଶୀଧୁ—ମଦ୍ୟବିଶେଷ ।

ଶୁକ୍ତ—ଜଳବା ଦୁଧରେ ତେଲ ଲୁଣ ଫଳମୂଳ ଓ କନ୍ଦାଦିକୁ ବୁଡେଇଁ ରଖିଲେ ସେ ଦ୍ରବ୍ୟର ନାମ ।

ସନ୍ତର୍ପଣକ୍ରିୟା—ରସାଦି ଧାତୁର ବୃଦ୍ଧିଜନକ କ୍ରିୟା ଯଥା ସ୍ନିଗ୍ଧ ମଧୁର ଗୁରୁ ପିଚ୍ଛିଳ ଦ୍ରବ୍ୟ ନୂତନଅନ୍ନ ନୂଆମଦ ଅନୂପଦେଶଜ ମାଂସ ଓ ଜଳଜ ଜନ୍ତୁମାନଙ୍କ ମାଂସ ଦୁଧ ଗୁଡଜାତମଦ ପିଠା ପ୍ରଭୃତି ପୁଷ୍ଟିକର ଦ୍ରବ୍ୟ ଅଙ୍ଗମର୍ଦ୍ଦନାଦି କାୟିକ ବ୍ୟାପାରରହିତ ଦିବସ ନିଦ୍ରା ।

ସାରକଦ୍ରବ୍ୟ—ଯେ ଦ୍ରବ୍ୟ ଖାଇଲେ ଝାଡା ହୁଏ ଜୁଲାପାଦି ।

ସ୍ୱେଦ—ବାଫଅଣିରେ ଝାଳ ବାହାର କରିବାର ।

ସ୍ନେହ—ଘିଅ ଓ ତେଲ ଓ ଚର୍ବିଆଦି ।

ସୌବୀର—ଚାଉଳଧୁଆପାଣି କେତେଦିନ ରହି ଖଟା ହେଲେ ତାହାର ନାମ

ଷାଡବ—ମଧୁରବର୍ଗ ଓ ଅମ୍ଳବର୍ଗ ସୈନ୍ଧବ ସୁଗନ୍ଧଦ୍ରବ୍ୟ ମିଶି ଯେ ଦ୍ରବ୍ୟ ହୁଏ ।

ହଂସୋଦକ—ଶରତ୍କାଳର ଜଳ ।

କ୍ଷାରଦ୍ରବ୍ୟ—ଯବକ୍ଷାର ସାଜିଖାର ଟାଙ୍ଗଣା କାଚଖାର ଓ ଏସମସ୍ତ କାଷ୍ଠାଦିର ପାଉଁଶ ॥ ୦ ॥

ସମାପ୍ତଃ ।

---